# ବୈଦ୍ୟଶାସ୍ତ୍ର

ଦୀନକୃଷ୍ଣ ଦାସ



ପ୍ରକାଶକ :
ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ
ଜଳେଶ୍ୱର

# ବୈଦ୍ୟଶାସ୍ତ୍ର



ଲେଖକ

ଦୀନକୃଷ୍ଣ ଦାସ



ପୋଥି ସମ୍ପାଦନା

ଡଃ ଲକ୍ଷ୍ମୀକାନ୍ତ ତ୍ରିପାଠୀ
ଡାଃ ଲକ୍ଷ୍ମୀକାନ୍ତ ହୋତା



ପ୍ରକାଶକ

ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ
ଜଳେଶ୍ୱର

# ବୈଦ୍ୟଶାସ୍ତ୍ର

ଲେଖକ
**ଦୀନକୃଷ୍ଣ ଦାସ**

ପୋଥି ସମ୍ପାଦନା
**ଡଃ ଲକ୍ଷ୍ମୀକାନ୍ତ ତ୍ରିପାଠୀ**
**ଡାଃ ଲକ୍ଷ୍ମୀକାନ୍ତ ହୋତା**

ପ୍ରକାଶକ :
**ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ**



ଅକ୍ଷରସଜ୍ଜା :
**କ୍ରିଏଟିଭ୍ କ୍ରାଫ୍ଟସ୍**
ଇ-୨୧, କଚେରୀ ରୋଡ୍, ବାଲେଶ୍ୱର
ଫୋନ୍ : ୩୬୬୨୬୫, ୩୬୧୭୬୫

ମୁଦ୍ରଣ :
**ରଘୁନାଥ ପ୍ରେସ**
ବିବେକାନନ୍ଦ ମାର୍ଗ, ବାଲେଶ୍ୱର
ଫୋନ୍ : ୩୬୫୩୯୭

ପ୍ରକାଶ କାଳ :
**କାର୍ତ୍ତିକ ପୂର୍ଣ୍ଣିମା - ୨୦୦୨**

ପ୍ରଚ୍ଛଦ :
**ତାପସ ପଣ୍ଡା**
ଇମ୍ପ୍ରେସ, ବାଲେଶ୍ୱର

ମୂଲ୍ୟ :
୪୫/-(ପଇଁଚାଳିଶ ଟଙ୍କା ମାତ୍ର)

# BAIDYASHASTRA

writer :
Dinakrushna Das

Pothi Editing :
Dr. Laxmikanta Tripathy
Dr. Laxmikanta Hota

Publisher :
Jaleswar Sahitya Sanskruti Sansada



D.T.P. :
Creative Crafts
E-21, Katchery Road, Balasore
Ph. : 366265, 361765

Print :
Raghunanta Press
Vivekananda Marg, Balasore
Ph. : 365397

Time of Publication :
Kartika Pumima-2002

Cover :
Tapas Panda

Rupees :
45/-[Forty-five only]

# ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦର କାର୍ଯ୍ୟକାରୀ କମିଟିର ସଭ୍ୟବୃନ୍ଦ

ସଭାପତି

**ହିମାଂଶୁ ନନ୍ଦୀ**

ଉପ ସଭାପତି

**ଭାସ୍କର ଚନ୍ଦ୍ର ସେଣ**

ସମ୍ପାଦକ

**ବିଷ୍ଣୁପଦ ମହାନ୍ତି**

ସହ ସମ୍ପାଦକ

**ଦିଲ୍ଲୀପ କୁମାର ଗିରି**

**ଚିନ୍ମୟ କୁମାର ଦାସ**

କୋଷାଧକ୍ଷ

**ବସନ୍ତ କୁମାର ମହାନ୍ତି**

କାର୍ଯ୍ୟକାରୀ କମିଟି

**ଡାକ୍ତର ଅତୁଲ ଚନ୍ଦ୍ର ପାତ୍ର**

**ଅଧ୍ୟାପିକା ସାଧନା ଗିରି**

**ଜାନକୀ ବଲ୍ଲଭ ମାନ୍ଧାତା**

**ଅନନ୍ତ କୁମାର ଭୂୟାଁ**

**ସତ୍ୟ ସୁନ୍ଦର ଦାସ**

**ବନ ବିହାରୀ ପ୍ରଧାନ**

**ଡଃ ଶ୍ରୀକାନ୍ତ ଚରଣ ପାତ୍ର**

**ଡାକ୍ତର ଲକ୍ଷ୍ମଣ କୁମାର ଜେନା**



**ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ ତରଫରୁ ପରବର୍ତ୍ତୀ ସମୟରେ ନିମ୍ନଲିଖିତ ଗବେଷଣାତ୍ମକ ସଂପାଦିତ ସଂକଳନମାନ ପ୍ରକାଶ କରାଯିବାକୁ ପ୍ରଚେଷ୍ଟା କରାଯାଉଛି ।**

**ଦୀନକୃଷ୍ଣ ଦାସଙ୍କ ଜଣାଣ ସମଗ୍ର**

(କବିଙ୍କ ରଚିତ ଅସଂଖ୍ୟ ଜଣାଣକୁ ସଂଗ୍ରହ କରି ଏଥିରେ ସଂଯୋଜିତ କରାଯିବ)

**ଦୀନକୃଷ୍ଣ ଦାସଙ୍କ ଚଉତିଶା ସଂକଳନ**

(କବିଙ୍କ ରଚିତ ସମଗ୍ର ଚଉତିଶା ପୋଥିରୁ ସଂଗ୍ରହ କରାଯାଇ ସଂଯୋଜିତ ହେବ )

**କଳିଯୁଗ ପୁରାଣ ସଂପାଦନା ଓ ସମୀକ୍ଷା**

(କବି ଦୀନକୃଷ୍ଣଙ୍କ ରଚିତ ଅପ୍ରକାଶିତ କଳିଯୁଗ ପୁରାଣକୁ ସଂପାଦନା କରାଯାଇ ପ୍ରକାଶ କରାଯିବ)

ଦୀନକୃଷ୍ଣଙ୍କର ଅନାଲୋଚିତ ଗ୍ରନ୍ଥ ସମୂହର ଏକ ସମୀକ୍ଷାତ୍ମକ ସଂକଳନ ମଧ୍ୟ ପ୍ରକାଶ କରାଯିବ ।

ଏହା ବ୍ୟତୀତ ଏ ଅଞ୍ଚଳର ପ୍ରଥିତଯଶା ଦିବଂଗତ କବି ଓ ଲେଖକମାନଙ୍କର ଅପ୍ରକାଶିତ ମୂଲ୍ୟବାନ ପୁସ୍ତକଗୁଡିକୁ ସଂଗ୍ରହ କରି ପ୍ରକାଶ କରାଯିବାର ଆଶାପୋଷଣ କରିଅଛୁଁ । ସାହାଯ୍ୟ ଓ ପ୍ରେରଣା ପାଇଁ ଆମର ନିବେଦନ ।

**ବିଷ୍ଣୁପଦ ମହାନ୍ତି**
**ସଂପାଦକ**

**ହିମାଂଶୁ ନନ୍ଦୀ**
**ସଭାପତି**

# ଆମ କଥା ସଂକ୍ଷେପରେ

ଓଡ଼ିଆ ସାହିତ୍ୟ ଓ ଓଡ଼ିଶାର କାବ୍ୟ ଜଗତର ପ୍ରବାଦ ପୁରୁଷ ରସକାବ୍ୟ ରସକଲ୍ଲୋଳର ମହନୀୟ ସ୍ରଷ୍ଟା ଭକ୍ତ କବି ଦୀନକୃଷ୍ଣ ଅତୀତରେ ସପ୍ତଦଶ ଶତାବ୍ଦୀର ପ୍ରାନ୍ତଭାଗ କିମ୍ବା ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭ କାଳରେ ସୁବର୍ଣ୍ଣରେଖା କୂଳସ୍ଥ ମୁଣ୍ଡୁରୁଣିଆ ଗ୍ରାମରେ ପିତା ମଧୁସୂଦନ ଦାସଙ୍କ ଔରସରୁ ଭୂମିଷ୍ଠ ହୋଇଥିଲେ । ଏହି ଭାବନା ମନକୁ ଆସିଲା କ୍ଷଣି ପ୍ରତ୍ୟେକ ଉତ୍ତର ବାଲେଶ୍ୱରବାସୀଙ୍କ ଦେହ ମନରେ ରୋମାଞ୍ଚ ସୃଷ୍ଟି ହୁଏ । ବିଭୁ ପ୍ରେମରେ ବିଭୋର ହୋଇ କେବଳ ଜଗନ୍ନାଥଙ୍କ ପାଇଁ ଭଣିତା ଲେଖୁଥିବା ସେ କାଳର ଜଣେ କବି ଗଜପତିଙ୍କ ପ୍ରଶଂସାରେ କବିତା ଲେଖିବାକୁ ସ୍ପଷ୍ଟ ମନାକରି ଦେଇଥିବା କଥାଟିକୁ ଏ କାଳର ଲୋକେ ସହଜରେ ବିଶ୍ୱାସ କରିବେ ନାହିଁ । କାରଣ ଏବର ସମୟରେ ଲବି ଓ ମାଲିସ, ପ୍ରଶଂସାପତ୍ର ଓ ଉପଢୌକନ ପ୍ରାପ୍ତିର ସହଜ ମାଧମ ହୋଇ ଉଠିଛି । ସେମିତି ଜଣେ କବିଙ୍କୁ ଓଡ଼ିଶାର ଉପାନ୍ତ ଅଞ୍ଚଳର ଏ ମାଟି ଜନ୍ମଦେଇ ଧନ୍ୟ ହୋଇଛି । ଗୌରବାନ୍ୱିତ ହୋଇଛି ଏ ମାଟିର ସାଂସ୍କୃତିକ ଐତିହ୍ୟ ।

ରସକଲ୍ଲୋଳର ସ୍ରଷ୍ଟା ବହୁ ରଚନା ସୃଷ୍ଟି କରି ଓଡ଼ିଆ କାବ୍ୟ ଜଗତକୁ ସମୃଦ୍ଧ କରିଛନ୍ତି। ତାଙ୍କ ଅନୁପମ ସାହିତ୍ୟ ସୃଷ୍ଟି ଦୀର୍ଘକାଳ ଧରି ସାହିତ୍ୟିକ ଓ ସାହିତ୍ୟ ସମାଲୋଚକମାନଙ୍କୁ ଆଚମ୍ବିତ କରିଆସିଛି । ତାଙ୍କର ପଦ ଲାଳିତ୍ୟ ବର୍ତ୍ତମାନ ସୁଦ୍ଧା ଅନତିକ୍ରମ୍ୟ । କାଳିଦାସଙ୍କ ଶିବ ପାର୍ବତୀ ରତି ଉପାଖ୍ୟାନ ବା କବି ଜୟଦେବଙ୍କ ରାଧାଙ୍କ ପୀନ ପୟୋଧର ମର୍ଦ୍ଦନ, ଆଖ୍ୟାନ ପରି ରସକଲ୍ଲୋଳକୁ ଜଗନ୍ନାଥଙ୍କର କୌତୁକ ବର୍ଣ୍ଣନା ରସବନ୍ତ କରି ତୋଳିଛି । ଏଠାରେ ରୀତି କବି ଦୀନକୃଷ୍ଣ କାଳଜୟୀ ହୋଇଯାଇଛନ୍ତି । ମାତ୍ର ବିଡ଼ମ୍ବନାର ବିଷୟ ଯେ ସେଇ କାବ୍ୟ ପୁରୁଷଙ୍କର ସାହିତ୍ୟ କୃତିକୁ ଗର୍ଭରେ ଧରି ଆମ ବୌଦ୍ଧିକ ସମ୍ଭାର ବେଶ୍ ଉଜ୍ଜ୍ୱଳ ଦିଶୁଥିବା ବେଳେ ତାଙ୍କ ପ୍ରକୃତ ପ୍ରତିକୃତିଟିଏ ତଥାପି ଦୁଷ୍ପ୍ରାପ୍ୟ ହୋଇ ରହିଛି ଆମ ସମ୍ଭ୍ରାନ୍ତ ସଂଗ୍ରହାଳୟ ପାଇଁ । କବି ଦୀନକୃଷ୍ଣ ଶେଷ ଜୀବନରେ ଦୁରାରୋଗ୍ୟ କୁଷ୍ଠ ରୋଗାକ୍ରାନ୍ତ ହୋଇ ପଡ଼ିଥିଲେ ବୋଲି କେଇଜଣ ପଣ୍ଡୁଭୁକ୍ ଚରିତକାର ମତ ଦେଉଥିଲା ବେଳେ ଆଉ କେଇଜଣ ଏ କଥାକୁ ସମର୍ଥନ କରିନାହାନ୍ତି । ଓଡ଼ିଆ ଜାତି ଏବଂ ଓଡ଼ିଶା ଭୂଖଣ୍ଡ ଅତ୍ୟନ୍ତ ଅଭିଶପ୍ତ ବୋଲି ମନେହୁଏ । ପାଦ ଟଣାଟଣି କରିବା ପାଇଁ ବହୁ ଚରଣ ପଟ୍ଟନାୟକ ଏଠାରେ

ନିୟମିତ ଭାବେ ଜନ୍ମ ନେଇ ଆସୁଛନ୍ତି । କେବଳ ରାଜନୀତି କିମ୍ବା ସଂସ୍କୃତି କ୍ଷେତ୍ରରେ ନୁହଁ ସାହିତ୍ୟ ଜଗତରେ ମଧ୍ୟ ଏମାନେ କଦବା କିପରି ଦୃଶ୍ୟମାନ ଅବା ଆତଯାତ ହୁଅନ୍ତି । କନ୍ଧ କବି ଭୀମ ଭୋଇ, ଯିଏ ଅପୂର୍ବ ଓ ଚରମ ସ୍ୱାର୍ଥତ୍ୟାଗ କଥା -

'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ' ।

ଲେଖିଗଲେ, ତାଙ୍କୁ ଶେଷରେ ତାଙ୍କର କୌଣସି ସତୀର୍ଥଙ୍କ ଦ୍ୱାରା ଅନ୍ଧ କବି ଆଖ୍ୟାୟିକା ବହନ କରିବାକୁ ପଡ଼ିଲା । ସେହି କ୍ରମନ୍ୟାୟରେ କୃଷ୍ଣଦାସ ବା ଦୀନକୃଷ୍ଣଙ୍କୁ କୁଷ୍ଠରୋଗୀ କରିଦିଆଗଲା । ତେବେ ତାଙ୍କ ରୋଗକୁ ନେଇ ବିତର୍କ ଚାଲୁ ରହିଥିବା ପରିପ୍ରେକ୍ଷୀରେ କବିଙ୍କ ଜନ୍ମପୀଠ ଜଳେଶ୍ୱରର ଅଗ୍ରଣୀ ସାହିତ୍ୟାନୁଷ୍ଠାନ ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ ବିଭିନ୍ନ ରୋଗର ଚିକିତ୍ସା ପାଇଁ ଭକ୍ତ କବି ବିରଚିତ ବୈଦ୍ୟଶାସ୍ତ୍ର ର ତାଳପୋଥି ସଂଗ୍ରହ କରି କବି ଦୀନକୃଷ୍ଣଙ୍କ ଜୀବନୀର ନୂଆ ଦିଗନ୍ତଟିଏ ଉନ୍ମୋଚନ କରିଛି । ପୋଥିର ଉତ୍ତମ ସଂପାଦନା ପାଇଁ ଶ୍ରୀଯୁକ୍ତ ଡଃ ଲକ୍ଷ୍ମୀକାନ୍ତ ତ୍ରିପାଠୀ ଏବଂ ଡାଃ ଲକ୍ଷ୍ମୀକାନ୍ତ ହୋତା ବହୁଶ୍ରମ ସ୍ୱୀକାର ଓ ବହୁମୂଲ୍ୟ ସମୟ ବିନିଯୋଗ କରି ଆମର ଉଦ୍ୟମକୁ ସଫଳ କରାଇଥିବାରୁ ସଂସଦର ବିଶେଷ ଅଭିନନ୍ଦନୀୟ ।

ରୀତିଯୁଗର କବି ଦୀନକୃଷ୍ଣଙ୍କବହୁ ସୃଷ୍ଟି ପ୍ରକାଶିତ ହୋଇ ତାଙ୍କୁ ଭକ୍ତ କବି ଭୂଷଣରେ ବିଭୂଷିତ କରିଛି । ଏହି ଉପାଧିଟି ମଧ୍ୟ କୌଣସି ଅନୁଷ୍ଠାନର ଆନୁଷ୍ଠାନିକ କିମ୍ବା ରାଜ ଦରବାର ଅବା ସରକାରୀ ଅନୁକମ୍ପା ନୁହେଁ । ଏହା ଓଡ଼ିଶାର ଓ ଓଡ଼ିଆ ଜାତିର ସମୂହ ଗଣପ୍ରଦତ୍ତ ଭୂଷଣ । ଏଭଳି ଗୌରବର ଅଧିକାରୀ ସାମ୍ପ୍ରତିକ ସମାଜରେ ଏକାନ୍ତ ବିରଳ । ମାତ୍ର ଅନ୍ୟ ଯେତେ ଯାହାକିଛି ତଥାପି ଅପ୍ରକାଶିତ ରହିଛି, ସେସବୁର ପ୍ରକାଶନ ପାଇଁ ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ ସତତ ସମର୍ପିତ । ବୈଦ୍ୟଶାସ୍ତ୍ର ପାଠକୀୟ ଶ୍ରଦ୍ଧା ଓ ସଦିଚ୍ଛା ଅର୍ଜନ କଲେ ଭବିଷ୍ୟତ ପାଇଁ ପ୍ରେରଣା ଓ ଶକ୍ତି ମିଳିବ ।

ଏଇଠି ଆମ ଅନୁଷ୍ଠାନ ସମ୍ପର୍କରେ ପଦୁଟିଏ ନ କହିଲେ ଅଧୁରା ରହିଯିବ ଆମ ଆତ୍ମନେପଦୀ । ଜଳେଶ୍ୱର ସାହିତ୍ୟ ସଂସ୍କୃତି ସଂସଦ ୧୯୯୩ ଜାନୁଆରୀ ୧୦ ତାରିଖରେ ଗଠିତ ହୋଇ ଏ ଅବଧି ସକ୍ରିୟ ଭାବେ କର୍ତ୍ତବ୍ୟ ସମ୍ପାଦନ କରିଆସୁଛି । ଜନ୍ମ ଲଗ୍ନରେ ଏହାର ଅଧ୍ୟକ୍ଷ ଥିଲେ ଅଧ୍ୟାପକ ନବ କିଶୋର ମହାନ୍ତି ଏବଂ ସମ୍ପାଦକ ଥିଲେ ସ୍ତମ୍ଭକାର ଅଧ୍ୟାପକ ନିରଞ୍ଜନ ପାଢ଼ୀ ।

ସାହିତ୍ୟର ବିଭିନ୍ନ ବିଭବ ଉପରେ ସୃଜନଶୀଳ ଆଲୋଚନା ଚଳାଇ ନୂତନ ଦିଗନ୍ତ ସୃଷ୍ଟି କରାଇବାରେ ଆମେ ଗୌରବାନ୍ୱିତ । କାର୍ଯ୍ୟ ଏବଂ କର୍ତ୍ତବ୍ୟକୁ ସୀମିତ କରିଦେବା ଆମ ଜାତକରେ ନାହିଁ । ଯେତେବେଶୀ ବ୍ୟାପକ ହୋଇପାରିବ ସେଥିପାଇଁ ଆମେ ଅଙ୍ଗୀକାର ବଦ୍ଧ ।

ଏଇ ସୀମାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟର କ୍ରମକ୍ଷୟିଷ୍ଣୁ ବିକଳ ଅବସ୍ଥା ଏବଂ ଓଡ଼ିଆ ସଂସ୍କୃତି ଓ ପରମ୍ପରାର ଅବକ୍ଷୟ ଏବଂ ସ୍ଥଳବିଶେଷରେ ବିଲୁପ୍ତି ଏହି ଅନୁଷ୍ଠାନର ସଭ୍ୟ, ବନ୍ଧୁ ଓ ଶୁଭେଚ୍ଛୁମାନଙ୍କୁ ନିରନ୍ତରେ ବ୍ୟଥିତ କରିଛି । ଏଗୁଡ଼ିକୁ ସମୃଦ୍ଧ ଓ ପୁନଃଉଦ୍ଧାର କରିବାକୁ ଶପଥ ନେଇଛୁ ।ସେଇ ମାନସିକତାରୁ ଜନ୍ମଲାଭ କରିଛି ବୋଇତ ବନ୍ଦାଣ ଉତ୍ସବ । ଏ ଅବଧି ତାହା ଜନ ସହଯୋଗରେ ଆଡ଼ମ୍ବର ସହ ପାଳିତ ହୋଇଆସୁଛି । ସହର, ବଜାର ଓ ଜନପଦମାନଙ୍କରେ ଓଡ଼ିଆ ଭାଷାକୁ ନ୍ୟୁନ କରି, ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଭାଷାରେ ନାମ ଫଳକ ଠାରୁ ଆରମ୍ଭ କରି ବିଭିନ୍ନ ବ୍ୟବସାୟ ପ୍ରତିଷ୍ଠାନର ଠିକଣାପଟା ଲେଖା ଓ ପ୍ରଦର୍ଶନ ହେବାର ପ୍ରବଣତାକୁ ରୋଧ କରିବାର ପ୍ରଚେଷ୍ଟା ବଳ ବତ୍ତର ରହିଛି । ଏ ସମ୍ପର୍କିତ ପୁସ୍ତିକା ପ୍ରତିବେଦନ ମୁଦ୍ରଣ କରି ବହୁଳ ଭାବରେ ବିତରଣ କରାଯାଉଛି ।

ସୀମାନ୍ତରେ ଓଡ଼ିଆ ଅଞ୍ଚଳଗୁଡ଼ିକୁ କୌଶଳର ସହ ଅପହରଣ କରାଯାଉଛି । ସେ ସମ୍ପର୍କରେ ସଠିକ ତଥ୍ୟମାନ ସଂଗ୍ରହ କରି ଜନ ସଚେତନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସରକାରଙ୍କ ଉପରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସୁରକ୍ଷା ପାଇଁ ଚାପ ପ୍ରୟୋଗ କରାଯାଉଛି ।

ସଂସଦ ଆନୁକୂଲ୍ୟରେ ଜଳେଶ୍ୱର ସମେତ ସାମଗ୍ରିକ ଭାବେ ଉତ୍ତର ବାଲେଶ୍ୱରର ସାହିତ୍ୟ ସଂସ୍କୃତି ଓ ସାମାଜିକ ବ୍ୟବସ୍ଥା ଓ ଅବସ୍ଥାର ଇତିହାସ ପୁସ୍ତକ ରଚନା କରି ଆଜିର ପିଢ଼ୀମାନଙ୍କ ହସ୍ତରେ ଅର୍ପଣ କରାଯିବାର ବ୍ୟବସ୍ଥା ବଳବତ୍ତର ରହିଛି ।

ପୁସ୍ତକର ପ୍ରଚ୍ଛଦଶିଳ୍ପୀ ପ୍ରତିଷ୍ଠିତ ତରୁଣ ଚିତ୍ରକର ଶ୍ରୀଯୁକ୍ତ ତାପସ ପଣ୍ଡାଙ୍କୁ ସ୍ନେହପୂର୍ଣ୍ଣ ଧନ୍ୟବାଦ ଜଣାଉଛୁଁ । କ୍ରିଏଟିଭ କାପ୍ସ ଅକ୍ଷର ସଜ୍ଜା ଏବଂ ମୁଦ୍ରଣ ପାଇଁ ରଘୁନାଥ ପ୍ରେସକୁ ଧନ୍ୟବାଦ ।

ପୁସ୍ତକଟି ସହୃଦୟ ପାଠକ ପାଠିକାମାନଙ୍କ ପାଖରେ ଆତ୍ମପ୍ରକାଶ କରାଇବାର ବହୁଳାଂଶରେ ଅବଦାନ ରହିଛି ଓଡ଼ିଶାର ଲବ୍ଧପ୍ରତିଷ୍ଠ ବ୍ୟଙ୍ଗ କବି ଓ ରମ୍ୟ କଥାକାର ଡକ୍ଟର ଲକ୍ଷ୍ମୀକାନ୍ତ ତ୍ରିପାଠୀ ମହାଶୟଙ୍କର । ଏହି ଅବସରରେ ଆମେ କୃତଜ୍ଞ ରହୁଛୁଁ ତାଙ୍କ ଠାରେ ।

ସଂସଦର ସମ୍ପାଦକ ଶ୍ରୀଯୁକ୍ତ ବିଷ୍ଣୁପଦ ମହାନ୍ତି ଓ କାର୍ଯ୍ୟକାରୀ କମିଟିର ମାନ୍ୟବର ସଭ୍ୟମାନେ ଏପରି କଳ୍ପନାର ଯେ ହେତୁ ରୂପକାର ତେଣୁ ସମସ୍ତ ପ୍ରଶଂସାର ବାସ୍ତବ ଅଧିକାରୀ ସେମାନେ । ଧନ୍ୟବାଦ ଓ ଅଭିନନ୍ଦନ ଆପଣାଛାଏଁ ସେମାନଙ୍କ ନିକଟରେ ପହଞ୍ଚିଯାଉଛି ।

ସର୍ବଶେଷରେ କୃଷ୍ଣଦାସ ବିରଚିତ ପଙ୍‌କ୍ତି ଦ୍ୱୟକୁ ଉଦ୍ଧାର କରି ରହୁଛି । ପୁସ୍ତକଟି ସବୁ ମହଲରେ ଆଦୃତ ହୋଇପାରିଲେ ଗୌରବାନ୍ୱିତ ମନେ କରିବୁଁ ।

"ଦୀନକୃଷ୍ଣ ଦାସ କହୁଛି ଯାହା
ସୁବୁଦ୍ଧି ଜନେ ହେତୁ କର ତାହା ।"

XX XX XX

"କବି ଯା କରେ ମୂର୍ଖକୁ ସ୍ତୁତି
ଏଥିରୁ ବଡ଼ ନାହିଁ ବିପତ୍ତି ।
ଏଥିକି ପ୍ରତି ଛାତିକି କାତି ମାରିବା ଭଲ ଯେ"

ଅଳମତି ବିସ୍ତରେଣ
**ହିମାଂଶୁ ନନ୍ଦୀ**
ସଭାପତି

# ପ୍ରାଗାଲୋଚନା

ଥରେ ଶ୍ରୀକୃଷ୍ଣ ତାଙ୍କର ପରମ ଭକ୍ତ ଉଦ୍ଧବଙ୍କୁ ଡାକି କହିଲେ, ହେ ଉଦ୍ଧବ ! ତୁମ୍ଭେ ଆମ୍ଭର ବାରତା ଘେନି ଗୋପ ପୁରକୁ ଯାଅ । ମୁଁ ତୁମକୁ ଯେଉଁ ଗୋପପୁରକୁ ପଠାଉଛି, ସେହି ଗୋପପାଟଣା ମନୁଷ୍ୟ ଦ୍ୱାରା ନିର୍ମିତ ହୋଇନାହିଁ । ଅମର ବୈକୁଣ୍ଠପୁର ଯେମିତି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛି । ସେହି ପାଟଣାକୁ ଦେଖିଲେ ତୁମ୍ଭେ ମୋହିତ ହୋଇଯିବ । ରାଧା ଆଦି ଯେତେ ଗୋପନାରୀ ଗୋପରେ ଜନ୍ମଗ୍ରହଣ କରିଛନ୍ତି , ସେମାନେ ସମସ୍ତେ ମୋତେ ତପସ୍ୟା କରି ସେହି ତପସ୍ୟାର ଫଳ ସ୍ୱରୂପ ବ୍ରଜକାମିନୀ ଭାବରେ ଜନ୍ମ ନେଇଛନ୍ତି । ସେହି ଗୋପପୁରରେ ଆମ୍ଭେ ଜନ୍ମଗ୍ରହଣ କରି ଗୋପୀମାନଙ୍କ ସହିତ ଶୈଶବ ସମୟ ଅତିବାହିତ କରିଅଛୁ । ଆମ୍ଭେ ଗୋପପୁର ତ୍ୟାଗକରି ମଥୁରା ପ୍ରତ୍ୟାବର୍ତ୍ତନ କରିବା ପରେ ଆମ୍ଭର ଦର୍ଶନ ନ ପାଇ ଗୋପୀମାନେ ଆମ୍ଭକୁ ନିରନ୍ତର ବସି ଭାଳୁଛନ୍ତି । ତୁମ୍ଭେ ଆମ୍ଭର ବାର୍ତ୍ତା ଘେନି ଯାଇ ଗୋପପୁରରେ ଗୋଟିଏ ଦିନ ଅତିବାହିତ କର ଏବଂ ସେମାନଙ୍କୁ ଜଣ ଜଣ କରି ପ୍ରବୋଧନା କରି ଜ୍ଞାନପଥ କିଛି କହ ।

ଶ୍ରୀକୃଷ୍ଣଙ୍କର ବାର୍ତ୍ତା ଗ୍ରହଣ କରି ଉଦ୍ଧବ ଯାଇ ଗୋପପୁରରେ ଉପସ୍ଥିତ ହେଲା । ଶ୍ରୀକୃଷ୍ଣଙ୍କ ଠାରୁ ଯାଇଥିବାର ଶୁଣି ଗୋପୀମାନେ ଉଦ୍ଧବଙ୍କ ନିକଟକୁ ଯାଇ ତାଙ୍କୁ ଘେରି ଭକ୍ତିଭରରେ କାନ୍ଦିବାକୁ ଲାଗିଲେ । ଉଦ୍ଧବ ଗୋପୀମାନଙ୍କର ଭକ୍ତି ଭାବରେ ମୁଗ୍ଧ ହୋଇ ଗୋପୀମାନଙ୍କର ଚରଣରେ ଓଳଗି ହେଲେ । ଗୋପୀମାନେ ଆଶ୍ଚର୍ଯ୍ୟ ହୋଇ କହିଲେ

"ଗୋପୀଏ ବୋଇଲେ ଶୁଣ ହେ ଉଦ୍ଧବ ! ଏ ତୁମ୍ଭ ନୁହଇ ଭଲ
ତୁମ୍ଭେ ଆମ୍ଭକୁ ଯେ ଓଳଗି ହୋଇଲ ଏବେ କର୍ମ କିମ୍ପା କଲ
ଆମ୍ଭେ ଗୋପନାରୀ ବନଜନ୍ତୁ ସରି ଅନୀତି ଆଚାରେ ଥାଉଁ ।
ଦଧି ମୁଣ୍ଡେ ଘେନି ବ୍ରାହ୍ମଣ ଚାଣ୍ଡାଳ ସବୁ ଦ୍ୱାରେ ବୁଲିଯାଉଁ
ତୁମ୍ଭେ ଯେ ପ୍ରଭୁଙ୍କ ଅଙ୍ଗସଙ୍ଗୀ ଲୋକ ସନ୍ଥ ଭକତ ସୁମତି
ବଡ଼ ହୋଇ କିମ୍ପା ସାନକୁ ଓଳଗ ଏ ତୁମ୍ଭର କେଉଁ ରୀତି ।"

ବଡ଼ ହୋଇ ସାନକୁ କାହିଁକି ଓଳଗିଲେ ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଉଦ୍ଧବ ଗୋପୀମାନଙ୍କୁ କାହାଣୀଟିଏ ଶୁଣାଇଥିଲେ । ସେ କାହାଣୀଟି ଏହିପରି -

ମାଘମାସର ବଡ଼ ଏକାଦଶୀ ଦିନ ଅଙ୍ଗିରା, ଅଗସ୍ତି, ଭୃଗୁ, ପରାଶର, ନାରଦ,

ସନକ, ମାର୍କଣ୍ଡ,ବ୍ୟାସ, ଶୁକ, ଅଷ୍ଟବକ୍ର, ଧ୍ରୁବ ଓ ବିଶ୍ୱାମିତ୍ର ଆଦି ମୁନି ଗଙ୍ଗାରେ ପ୍ରଭାତ ସ୍ନାନ ସାରି ମୁକ୍ତି ମଣ୍ଡପରେ ବସିଲେ । ଅଗସ୍ତି ପରାଶର ମୁନିଙ୍କୁ ସମ୍ବୋଧନ କରି କହିଲେ ହେ ପରାଶର ! ଆମ୍ଭମାନଙ୍କର ଦୁଷ୍କୃତ ଖଣ୍ଡନ କରିବାପାଇଁ ଶ୍ରୀକୃଷ୍ଣଙ୍କର ମହିମା ଆମ୍ଭ ଆଗରେ ବର୍ଣ୍ଣନ କର । ପରାଶର କହିଲେ - ମୋର ଏଡ଼େ ଭାଗ୍ୟ କାହିଁ ଯେ ମୁଁ ଶ୍ରୀକୃଷ୍ଣଙ୍କ କଥା କହିବି । ମୁଁ ଏତେ ଛାର ଯେ ଥରୁଟିଏ ବି ଶ୍ରୀ ବାସୁଦେବଙ୍କର କଥା ଉଚ୍ଚାରଣ କରିପାରିବି ନାହିଁ । ପରାଶରଙ୍କ ଠାରୁ ନିରାଶ ବାଣୀ ଶୁଣି ଅଗସ୍ତି ବ୍ୟାସଙ୍କ ଆଡ଼କୁ ଚାହିଁଲେ - ବ୍ୟାସ କହିଲେ - ମୁଁ କୋଟି କୋଟି ଶ୍ଳୋକ ଅକ୍ଳେଶରେ ରଚନା କରିଗଲି । ମାତ୍ର କୃଷ୍ଣଙ୍କର ଅନ୍ତ ପାଇଲି ନାହିଁ । ବ୍ୟାସଙ୍କ ଠାରୁ ନିରାଶ ବାଣୀ ଶୁଣି ଅଗସ୍ତି ଶୁକମୁନିଙ୍କୁ କୃଷ୍ଣ କଥା ଶୁଣାଇବାକୁ ଅନୁରୋଧ କଲେ । ମାତ୍ର ଶୁକମୁନି କହିଲେ - ଶ୍ରୀକୃଷ୍ଣଙ୍କର ଚରିତ ମୋର ପିତା ମଧ ଜାଣିପାରି ନାହାଁନ୍ତି । ତାଙ୍କ ବୀର୍ଯ୍ୟରୁ ଜାତ ହୋଇ ମୁଁ ବା କିପରି ତାଙ୍କର ଚରିତ କହିପାରିବି ?

ଶ୍ରୀକୃଷ୍ଣଙ୍କ ମହିମା ଶୁଣିବାକୁ ଉତ୍ସୁକ ଅଗସ୍ତି, ମନରେ ଭାଳି ହୋଇ ନାରଦଙ୍କ ମୁଖକୁ ଚାହିଁ କିଛି କଥା କହିପାରିବେ କି ବୋଲି ପ୍ରଶ୍ନ କଲେ । କାରଦ କହିଲେ - କୃଷ୍ଣ ତ ମାୟାଧର ଯୋଗାଧିପୁରୁଷ । ବ୍ରହ୍ମାଙ୍କୁ ମଧ ତାଙ୍କର ମହିମା ଅଗୋଚର । ତିନିପୁରରେ ତାଙ୍କର ଚରିତ କେହି ଉଲ୍ଲେଖ କରିପାରନ୍ତି ନାହିଁ । ମୁଁ ତ ଛାରଲୋକ । ସିଦ୍ଧମାନେ ମଧ ତାଙ୍କର ଭେଟ ପାଆନ୍ତି ନାହିଁ । ନାରଦଙ୍କର କଥା ଶୁଣି ଅଗସ୍ତି ବିନୟରେ ଅଙ୍ଗିରାଙ୍କର ମୁଖକୁ ଚାହିଁଲେ । ଅଙ୍ଗିରା କହିଲେ - ଶ୍ରୀକୃଷ୍ଣଙ୍କର ମହିମା ଖୋଜିଖୋଜି କେଉଁଠାରୁ ନ ପାଇ ମୁଁ ଥରେ ଶିବଙ୍କ ନିକଟକୁ ଯାଇଥିଲି । ଯୋଗ ସାଧନା କରି କରି ତାଙ୍କର ଅନ୍ତ ପାଇନାହାନ୍ତି ବୋଲି ଶିବ କହିବାରୁ ନିରାଶ ହୋଇ ଫେରିଆସିଲି । ଅଙ୍ଗିରାଙ୍କ ବଚନ ଶୁଣି ଅଗସ୍ତି ତାଙ୍କ ଆଡୁ ମୁହଁ ଫେରାଇ ମାର୍କଣ୍ଡଙ୍କ ଆଡ଼କୁ ଚାହିଁଲେ ।

ମାର୍କଣ୍ଡ କହିଲେ - ଯୁଗର ଶେଷ କାଳରେ ଆମ୍ଭେ ଗଭୀର ସମୁଦ୍ରରେ ପଡ଼ି ଭାସୁଥିଲୁ । ପ୍ରଭୁ ତ୍ରାହିକର ବୋଲି ଡାକ ଛାଡ଼ିବାରୁ କୃଷ୍ଣ ଆମର ଡାକ ଶୁଣିଲେ ଓ ଆମକୁ ଗର୍ଭ ଭିତରକୁ ନେଇଗଲେ । ମୁଁ ଗର୍ଭ ଭିତରକୁ ପଶିଗଲି, ମାତ୍ର ଆଉ କିଛି ଜାଣିପାରିଲି ନାହିଁ । ତାଙ୍କ ଗର୍ଭ ଭିତରେ ଅଶେଷ ବ୍ରହ୍ମାଣ୍ଡ,କୋଟି କୋଟି ମେରୁ, କୋଟି କୋଟି ପୃଥ୍ୱୀ ଭରି ରହିଥିଲା । କେତେଯୁଗ ପର୍ଯ୍ୟନ୍ତ ସେହି ଗର୍ଭ ଭିତରେ ମୁଁ ବୁଲିଲି ତାହା କଳନା କରିପାରିବି ନାହିଁ । ବ୍ୟାସମୁନି ବ୍ରହ୍ମରୁ ଜନ୍ମ ହୋଇ ମଧ କୃଷ୍ଣଙ୍କର ଉତ୍ପତ୍ତି

ଓ ଅନ୍ତ ଖୋଜି ପାଇ ନାହାନ୍ତି । ମୁଁ ହୀନ ଓ ଛାର ତାହା କିପରି ପାଇବାକୁ ସକ୍ଷମ ହେବି ।

ସେହି ମୁନିମାନଙ୍କର ଗହଣରେ ସାତବର୍ଷର ବାଳକ ଧ୍ରୁବ ମଧ ବସିଥିଲେ । ଅଗସ୍ତିମୁନି କୃଷ୍ଣଙ୍କର ଚରିତ ଜାଣିବା ପାଇଁ ଧ୍ରୁବଙ୍କର ଗୋଡ଼ ଧରିପକାଇଲେ । ଧ୍ରୁବଙ୍କର ପାଦ ଧରି ପକାଇବାରୁ ଋଷିମାନେ ଅସନ୍ତୁଷ୍ଟ ହୋଇ ଅଗସ୍ତିଙ୍କୁ କହିଲେ -

"ସାତବରଷର ବାଳକ ଶିଶୁ ଏ ତୁମ୍ଭେ ସାତକଳ୍ପ ମୁନି
ଯେବେ ଯତି ହୋଇ ପାଦ ଯେ ଧଇଲ ପୁତ୍ରର ହୋଇଲା ହାନି ।"

ଅଗସ୍ତି ଋଷିମାନଙ୍କୁ ବୁଝାଇ ଦେଇ କହିଲେ - ଧ୍ରୁବ ନିରନ୍ତର ସାତବର୍ଷ ଧରି କୃଷ୍ଣନାମ ଘୋଷୁଅଛନ୍ତି । ମୁଁ ନିରନ୍ତର ଭଜନ ନ କରି ପକ୍ଷେ ଦଣ୍ଡେ ଓ ବେଳେବେଳେ କୃଷ୍ଣନାମକୁ ଭଜନ କରୁଛି । ସମଗ୍ର ଜୀବନ କାଳକୁ ମିଶାଇଲେ ମୁଁ ମାତ୍ର ପାଞ୍ଚ ବର୍ଷକାଳ କୃଷ୍ଣନାମକୁ ସ୍ମରଣ କରିଛି । ଏଣୁ ଧ୍ରୁବ ମୋ ଠାରୁ ଦୁଇ ବର୍ଷ ବଡ଼ ।

ଗୋପୀମାନେ ବୟସରେ ସାନ ହୋଇଥିଲେ ମଧ କୃଷ୍ଣନାମ ସ୍ମରଣରେ ଉଦ୍ଧବଙ୍କ ଠାରୁ ଉଚ୍ଚ ବୋଲି ଉଦ୍ଧବ ଗୋପୀମାନଙ୍କୁ ନମସ୍କାର କଲେ ବୋଲି ସେ ଗୋପୀମାନଙ୍କୁ ବୁଝାଇଦେଲେ । ଏହି ପ୍ରସଙ୍ଗଟି ଦୀନକୃଷ୍ଣ ଦାସଙ୍କ ଗୁଣସାଗର ପୋଥିର ଆରମ୍ଭରେ ହିଁ ସଂଶ୍ଳିଷ୍ଟ ଅଛି । କୃଷ୍ଣଙ୍କୁ ଓ କୃଷ୍ଣ ଭକ୍ତମାନଙ୍କୁ କବି କେତେ ଉଚ୍ଚ ସ୍ଥାନରେ ଆସୀନ କରାଇଛନ୍ତି ତାହା ଜଣାଇବା ପାଇଁ ଏହି ପ୍ରସଙ୍ଗଟିର ଅବତାରଣା କରାଗଲା । ସେହି କୃଷ୍ଣନାମକୁ ସ୍ମରଣ କରି ବୈଦ୍ୟଶାସ୍ତ୍ର ନାମକ ଗ୍ରନ୍ଥର ଆରମ୍ଭରେ କବି ଲେଖିଛନ୍ତି -

ଜୟ ଜୟ କୃଷ୍ଣ କରୁଣାସିନ୍ଧୁ । କମଳା ବଲ୍ଲଭ ଜଗତବନ୍ଧୁ
ଅଶେଷ କୋଟି ବ୍ରହ୍ମାଣ୍ଡ ଠାକୁର । ଶଙ୍ଖଚକ୍ର ଗଦା ସାରଙ୍ଗଧର
ସ୍ଥାବରଜଙ୍ଗମ ପତଙ୍ଗ କୀଟ । ଜୀବ ସ୍ୱରୂପ ହୋ ସବୁରି ଅଟ
ଯାହାକୁ ଯେମନ୍ତପ୍ରାପତ ଗତି । ତୁମ୍ଭେ ସିନା ଦେଇଅଛ ସବୁନ୍ତି
ଦୀନକୃଷ୍ଣ ଦାସ ମାଗୁଛି ବର । ଭୋ ପ୍ରଭୁ ମୋତେ ଅନୁଗ୍ରହ କର ।

ବୈଦ୍ୟଶାସ୍ତ୍ରର ଭଣିତାରେ ଯେଉଁ ଦୀନକୃଷ୍ଣ ଦାସଙ୍କର ନାମ ଉଲ୍ଲେଖ କରାଯାଇଛି ସେ ରସବିନୋଦ ବା ରସକଲ୍ଲୋଳ ରଚୟିତାଙ୍କ ଠାରୁ ଭିନ୍ନ ନୁହନ୍ତି । ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ଏକ ବା ଏକାଧିକ ସେ ସମ୍ପର୍କରେ ବହୁ ପଣ୍ଡିତ ବହୁବାର ଆଲୋଚନା କରି ସାରିଛନ୍ତି । ରସବିନୋଦକାର ରସକଲ୍ଲୋଳକାର ଏକ ବୋଲି ମଧ

ଗୃହୀତ ହୋଇସାରିଛି । ରସ ବିନୋଦକାର ଓ ରସକଲ୍ଲୋଳକାର କବି କୃଷ୍ଣଦାସ ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ସନ୍ନିକଟସ୍ଥ ଏକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସମ୍ପ୍ରତି ସେହି ଗ୍ରାମକୁ ମୁଣ୍ଡତୁଣିଆ ଗ୍ରାମ ବୋଲି ଚିହ୍ନଟ କରାଯାଇଛି । ନିଜ ଜନ୍ମସ୍ଥାନର ବର୍ଣ୍ଣନା ଦେଇ କବି ରସବିନୋଦର ଶେଷ ଛାନ୍ଦରେ କହିଛନ୍ତି -

ପୂର୍ବ ବାସନା ଆଦିମୂଳ । ଜନମ ରାଜପୁତ୍ର କୁଳ
ସୁବର୍ଣ୍ଣରେଖା ନଦୀ ତୀର । କଟକ ନାମ ଜଳେଶ୍ୱର
ସପତ ପୁରୁଷ ମୋ ତହିଁ । ଗଲା ଯେ ଏତେକାଳ ବହି
ବନ୍ଧୁ କୁଟୁମ୍ବ ତହିଁ ଯେତେ । ରହିଣ ଅଛନ୍ତି ସମସ୍ତେ
ତଣିଆ ରାଜ୍ୟର ନିକଟେ । ସକଳ ଚଉଦଣ୍ଡ ପାଟେ

କୃଷ୍ଣଦାସ ନିଜକୁ ରାଜପୁତ୍ର ଜାତି ବୋଲି କହିଥିବା ଯୋଗୁଁ ଅନେକ ଆଲୋଚକଙ୍କ ମନରେ ସଂଶୟ ସୃଷ୍ଟି ହୋଇଛି । ବିଜୟ ଚନ୍ଦ୍ର ମଜୁମଦାର ଦୀନକୃଷ୍ଣଙ୍କୁ ଜଣେ ନୀଚ ଜାତିର ଲୋକ ଥିଲେ ବୋଲି ବିଶ୍ୱାସ କରୁଥିଲେ । କବି ବେଶ୍ୟାପୁତ୍ର ଥିଲେ ବୋଲି କେହି କେହି ଆଲୋଚକ କୁହନ୍ତି ବୋଲି ମୃତ୍ୟୁଞ୍ଜୟ ରଥ ଉଲ୍ଲେଖ କରିଯାଇଛନ୍ତି । "ଦାର୍ଢ୍ୟତା ଭକ୍ତି" ଗ୍ରନ୍ଥରେ ରାମଦାସ, କୃଷ୍ଣଦାସଙ୍କୁ କରଣକୁଳ ଜାତ ବୋଲି ବର୍ଣ୍ଣନା କରିଥିବାରୁ କେହି କେହି ଆଲୋଚକ ରସ କଲ୍ଲୋଳକାରଙ୍କୁ କରଣ ବଂଶଜ ଏକ ଭିନ୍ନ କବି ବୋଲି ସଂଶୟ ପୋଷଣ କରିଥାନ୍ତି । ମାତ୍ର ରାଜପୁତ୍ର ଓ କରଣ ଜାତି ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଜଳେଶ୍ୱର ଅଞ୍ଚଳରେ ବହୁ ସଂଖ୍ୟାରେ ରାଜୁ ଜାତି ଅଛନ୍ତି, ଯେଉଁମାନେ ନିଜକୁ ରାଜପୁତ୍ର ଭାବରେ ପରିଚିତ କରାଇଥାଆନ୍ତି ।

ଏହି ଜାତି କରଣମାନଙ୍କର ସମକକ୍ଷ । ବାଲେଶ୍ୱରର ଉତ୍ତରାଞ୍ଚଳରେ ଏହି ଜାତି ଆଜି ବି ଧନୀ, ଜ୍ଞାନବନ୍ତ ଓ ପ୍ରଭାବଶାଳୀ ଭାବରେ ଜୀବନ ଅତିବାହିତ କରୁଅଛନ୍ତି । ତେଣୁ ରାଜପୁତ୍ର ଦୀନକୃଷ୍ଣଙ୍କୁ କରଣ ବୋଲି କହି ଦାର୍ଢ୍ୟତାଭକ୍ତିର କବି ରାମଦାସ କୌଣସି ଭିନ୍ନ କୃଷ୍ଣଦାସଙ୍କ କଥା ସୂଚାଇ ନାହାନ୍ତି ବୋଲି ବୁଝିବାକୁ ହେବ ।

ବୈଦ୍ୟଶାସ୍ତ୍ର ଗ୍ରନ୍ଥଟି ରସବିନୋଦ ବା ରସକଲ୍ଲୋଳକାର କୃଷ୍ଣ ଦାସଙ୍କ ଦ୍ୱାରା ରଚିତ ବା ନୁହେଁ, ଏଥିନେଇ ପାଠକ ବା ଗବେଷକ ଙ୍କ ମଧ୍ୟରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ରସ ବିନୋଦ ଗ୍ରନ୍ଥରେ କୃଷ୍ଣ ଦାସ ରଚନା କରିଥିବା ଅନ୍ୟ କେତେକ ଗ୍ରନ୍ଥରେ ସୂଚନା ଦେଇଛନ୍ତି । ଏଥିରେ ପ୍ରଥମେ ସେ ଗୁଣସାଗର ରଚନା କରିଛନ୍ତି

ବୋଲି କହିଛନ୍ତି । ରସବିନୋଦରେ ପ୍ରକାଶିତ ଅନ୍ୟ କେତେକ ଗ୍ରନ୍ଥର ନାମ ହେଲା- ଭାବ ସମୁଦ୍ର ବା ରସ ସମୁଦ୍ର, ଭୂତକେଳି, ସହସ୍ର ବୋଧନ, ଅମୃତ ସାଗର, ମୁକ୍ତି ସାଗର, ପ୍ରସ୍ତାବ ସାଗର, ତତ୍ତ୍ୱ ସାଗର ,ଜଗମୋହନ ଛାନ୍ଦ, ଜାମ୍ବବତୀ ବିଭା, ବୃନ୍ଦାବନରାସ, କଂସବିଭା, ଜ୍ଞାନସାଗର, ଧର୍ମ ସାଗର, ପଞ୍ଚପାଟୀ ବଂଶୀବିଭା,ଦରିଦ୍ର ଦାମୋଦର ଦ୍ୱିଜ ବା ଅର୍ଜୁନ ଗୀତା,ରସ ବିନୋଦ, ନାରକାସୁରବଧ, ଭକ୍ତିସାଗର,ରୁକ୍ମଣୀବିଭା, ବାଣାସୁର ଯୁଦ୍ଧ, ଜ୍ଞାନ ଚୂଡାମଣି, ସ୍ତ୍ରୀ ପୁରୁଷ ଲକ୍ଷଣ, ମହିମା ସାଗର ଓ ଅନ୍ୟାନ୍ୟ ଚଉତିଶା । ପଣ୍ଡିତ ବିନାୟକ ମିଶ୍ର କୃଷ୍ଣଦାସଙ୍କ ରଚିତ ଅନ୍ୟ କେତେକ ଗ୍ରନ୍ଥର ସୂଚନା ଦେଇଛନ୍ତି । ସେ ଗୁଡିକ ହେଲା-ଚକ୍ରଧର ବିଳାସ,ମଧୁ ସୂଚନା ବିଳାସ, କଳାକର ଚଉତିଶା, ଆର୍ତ୍ତତ୍ରାଣ ଚଉତିଶା, କମଳା କାନ୍ତ ଚଉତିଶା, ବାରମାସୀ କୋଇଲି, ଗୁଣ୍ଡିଚା ବିଜେ, ଦ୍ୱାଦଶ କୁଞ୍ଜଲୀଳା, ନାବକେଳୀ, ଅଳଙ୍କାର ବୋଲି, ପ୍ରଭାତ ଅବକାଶ, ସ୍ନାନୋତ୍ସବ ଚଉତିଶା, ଜଗମୋହନ ଛାନ୍ଦ ଇତ୍ୟାଦି । ଏହାବ୍ୟତୀତ ତାରିଣୀ ଚରଣ ରଥ ମଧ ତାଙ୍କ ରଚିତ ଅନ୍ୟ କେତେକ ଗ୍ରନ୍ଥର ସୂଚନା ଦିଅନ୍ତି । ଯଥା : - ସାମୁଦ୍ରିକ, ରାଧା କବଚ, ମାଧବକର ଗୀତା, ଉଜ୍ଜ୍ୱଳ ନୀଳମଣି କାରିକା, ଜଗନ୍ନାଥ ଭାଗବତ ଇତ୍ୟାଦି ।

ଏସବୁ ବ୍ୟତୀତ କୃଷ୍ଣଦାସଙ୍କ ନାମରେ ଅନ୍ୟ ବହୁ ଗ୍ରନ୍ଥର ଭଧ ଭଣିତା ରହିଛି । ସେଗୁଡ଼ିକ ହେଲା - ଏକାଦଶୀ ମାହାତ୍ମ୍ୟ, ଜୈମିନୀ ଭାରତ, ଧର୍ମପୁରାଣ, ଭାଗବତ ରତ୍ନମାଳା, ମାଘ ମାହାତ୍ମ୍ୟ, ଯମପୁରାଣ, ଅମରକୋଷ ଗୀତା, ଆଦ୍ୟଚିନ୍ତାମଣି, ଉପାସନା ଦୀପିକା, କଳିସିଦ୍ଧି, କଳିଯୁଗ ପୁରାଣ, କାମକାନ୍ତ ଚଉତିଶା, କୃଷ୍ଣଲୀଳା, କୋଳାହଳ ଚଉତିଶା, ଷଡ଼ରସଗୀତା ବା ଦ୍ୱିତୀୟ ଗୀତା, ପଇତା ଜନ୍ମ, ପାଷାଣ୍ଡ ଦଳନ , ବଉଳ ଚଉତିଶା, ବହୁଜ୍ଞାନ, ମହନ୍ତ ନିର୍ଣ୍ଣୟ, ମୁକୁନ୍ଦମାଳା, ରତ୍ନମାଳିକା, ରାମ ଜଣାଣ, ଶ୍ୟାମ ଚଉତିଶା, ଶ୍ୟାମଦୀଘା, ସଜବୋଲି, ରାଧାମୃତ ଗୀତା, ଶ୍ରୀକୃଷ୍ଣ କର୍ଣ୍ଣାମୃତ,ଭୀମ ସଂହିତା, ସପ୍ତାଙ୍ଗ ଇତ୍ୟାଦି ।

ଏଠାରେ ଯେଉଁ ଗ୍ରନ୍ଥର ସମ୍ପାଦନା କରାଯିବ, ସେହି ଗ୍ରନ୍ଥର ନାମ ବୈଦ୍ୟଶାସ୍ତ୍ର ଓ ତାହାର ରଚୟିତା ଉପରୋକ୍ତ କାବ୍ୟ ସମୂହର ପ୍ରଣେତା କୃଷ୍ଣଦାସ ବା ଦୀନକୃଷ୍ଣ ଦାସ । ଆୟୁର୍ବେଦ ଶାସ୍ତ୍ରରେ କାବ୍ୟାକାରରେ କୌଣସି ଗ୍ରନ୍ଥ ରଚିତ ହୋଇଛି କି ନାହିଁ ବୋଲି ଜାଣିବା ପାଇଁ ହୃଦୟ ମଧ୍ୟରେ ଏକ ଆଗ୍ରହକୁ ନେଇ ମୁଁ ଓ ମୋର ବନ୍ଧୁ ଆୟୁର୍ବେଦ

ଶାସ୍ତ୍ରବିତ୍ ଡାଃ ଲକ୍ଷ୍ମୀକାନ୍ତ ହୋତା ଭୁବନେଶ୍ୱରରେ ଥିବା ଓଡ଼ିଶା ମ୍ୟୁଜିୟମର ପୋଥି ବିଭାଗର ଦ୍ୱାରସ୍ଥ ହୋଇଥିଲୁ । ସେଠାରୁ ଓଡ଼ିଆ ଭାଷାରେ କାବ୍ୟାକାରରେ ରଚିତ ପୋଥି ଖଣ୍ଡିଏ ପ୍ରାପ୍ତ ହୋଇ କାଗଜ କଲମରେ ତାହାକୁ ନକଲ କରି ଆଣିଲୁ । ସେହିପରି ଅନ୍ୟ ଖଣ୍ଡିଏ ପୁସ୍ତକର ମଧ ସନ୍ଧାନ ମିଳିଲା । ଡଃ କଇଳାଶ ପଟ୍ଟନାୟକ ବିଶ୍ୱ ଭାରତୀ ପୋଥି ସମୂହରୁ ଏହିପରି ଏକ ପୋଥିର ନକଲ କରି ଆମ୍ଭ ନିକଟକୁ ପଠାଇଦେଲେ । ଅନ୍ୟତ୍ର କେଉଁଠାରୁ ବୈଦ୍ୟଶାସ୍ତ୍ର ପୋଥିର ସନ୍ଧାନ ଆମେ ପାଇପାରିନାହୁଁ । ତେଣୁ ଏଇ ଦୁଇଗୋଟି ପୋଥି ହିଁ ହେବ ବୈଦ୍ୟଶାସ୍ତ୍ର ସମ୍ପାଦନାର ଭିତ୍ତି ।

ବୈଦ୍ୟଶାସ୍ତ୍ର ନାମକ ଏହି ପୋଥିଟିରେ କୃଷ୍ଣଦାସଙ୍କ ନାମର ଭଣିତା ଥିବା ଯୋଗୁଁ ଏହାକୁ ରସ ବିନୋଦକାର କିମ୍ବା ରସ କଲ୍ଲୋଳକାର ଦୀନକୃଷ୍ଣଙ୍କର ବୋଲି ଧରିନେବାକୁ ପଡ଼ିବ । ଆମେ ଏହାକୁ ସତ୍ୟ ବୋଲି ଗ୍ରହଣ କରିସାରିଛୁ । ପାଠକମାନଙ୍କ ମାନସିକ ପୂର୍ତ୍ତି ନିମନ୍ତେ ଏଠାରେ କିଛି ପ୍ରମାଣ ଉପସ୍ଥାପନ କରିବାପାଇଁ ଚେଷ୍ଟା କରୁଛି ।

( ୧ ) ଭଣିତା : ଗ୍ରନ୍ଥର ଅନେକତ୍ର ଦୀନକୃଷ୍ଣଙ୍କ ନାମରେ ଭଣିତା ପ୍ରଦାନ କରାଯାଇଛି । ଯେମିତି -

ଦୀନକୃଷ୍ଣ ଦାସ ମାଗୁଛି ବର । ଭୋ ପ୍ରଭୁ ମୋତେ ଅନୁଗ୍ରହ କର ।

XX XX XX

ଦୀନକୃଷ୍ଣ ଦାସ ପ୍ରଭୁ ଶରଣ । ସୁବୁଦ୍ଧି ସାଧୁ ବୈଦ୍ୟମାନେ ଶୁଣ ।

XX XX XX

ଶ୍ରୀଜଗନ୍ନାଥଙ୍କୁ ଶରଣ ଯାଇ । ଦୀନକୃଷ୍ଣ ଦାସ ସାହାସ୍ରେ କହି ।

XX XX XX

ସେ ପ୍ରଭୁ ଚରଣେ ନିତ୍ୟ ମୋ ଆଶ । ବୈଦ୍ୟ ସାହାସ୍ର କଲେ କୃଷ୍ଣ ଦାସ ।

XX XX XX

ସାହାସ୍ର ବିଧି ଏ କହିଲି ଆଣି । ଦୀନକୃଷ୍ଣ ଦାସ ଔଷଧ ଭଣି ।

XX XX XX

ଏ ବ୍ୟାଧି ଗୋଟିକି ଜିଣିପାରିଲେ । ଦୀନକୃଷ୍ଣ ଦାସ ଧନ୍ୟନ୍ତ୍ରି ବୋଲେ ।

XX XX XX

ଏ ବଡ଼ି ଦେଇଣ ନୁହ ବିରସ । ଏହା କହିଲେ ଦୀନକୃଷ୍ଣ ଦାସ ।

XX XX XX

ଶ୍ରୀ ଜଗନ୍ନାଥଙ୍କ ଆଜ୍ଞା ପ୍ରମାଣେ । ଦୀନକୃଷ୍ଣ ଦାସ ଔଷଧ ଭଣେ ।

( ୨ ) ଅନ୍ୟ ଭଣିତା ସହ ସାମଞ୍ଜସ୍ୟ : -

ଅନ୍ୟ ଗ୍ରନ୍ଥର ବହୁ ସ୍ଥାନରେ ବୈଦ୍ୟଶାସ୍ତ୍ର ପରି ଦୀନକୃଷ୍ଣ ପରିବର୍ତ୍ତେ କୃଷ୍ଣଦାସ କିମ୍ବା ଶିଶୁମତି କୃଷ୍ଣଦାସ ଭାବରେ ଭଣିତା କରାଯାଇଛି । ଉଦାହରଣ ଭାବରେ କେତେକ ଗ୍ରନ୍ଥର ଭଣିତା ଏଠାରେ ପ୍ରଦାନ କରାଗଲା ।

କୃଷ୍ଣ ଗୀତ ଶରଧାରେ ଗାଇବ ।

କୃଷ୍ଣଦାସକୁ ପ୍ରସନ୍ନ ହୋଇବ ।(ରସ କଲ୍ଲୋଳ)

XX XX XX

ଅମୃତହୁଂ ସୁଆଦ ଯେ ମଧୁରସ ବାଣୀ

ସଂସାର ଜନଙ୍କ ହିତେ କୃଷ୍ଣଦାସ ଭଣି(ନାମରତ୍ନ ଗୀତା)

XX XX XX

କରୁଣା କରିବେ କୃପା ଜଳଧି

ଭଣେ କୃଷ୍ଣଦାସ କଳିର ବିଧି(କଳିସିଦ୍ଧି)

XX XX XX

ଷୋଳପଦ ଗୀତ ଗୁରୁ ଜ୍ଞାନ ଉପଦେଶ

ଶ୍ରୀଗୁରୁ ଆଜ୍ଞାରେ ଫେଡ଼ି କହେ କୃଷ୍ଣଦାସ (ଜ୍ଞାନ ଭଣ୍ଡାର ଗୀତା)

XX XX XX

ଏହି ପ୍ରକାରେ ତିନିଦିନ କର

କୃଷ୍ଣଦାସ କହେ ଖଣ୍ଡିବ ଜ୍ୱର ।(ବୈଦ୍ୟଶାସ୍ତ୍ର)

XX XX XX

ଧନ୍ୟନ୍ତ୍ରି କହିଲେ ଶୁଣ ହୋ ବୈଦ୍ୟ

କୃଷ୍ଣଦାସ କହେ ବ୍ୟାଧିକି ଖେଦ(ବୈଦ୍ୟଶାସ୍ତ୍ର)

XX XX XX

ମୁଁ ତ ମୂଢ଼ମତି ନ ଜାଣଇ ସଦଗତି

ତୁମ୍ଭେ କହିବା ଉପଦେଶ

শিশুমতি কৃষ্ণদাস ভণই

ଶ୍ରୀମୁଖୁଁ ଫିଟିବ ସନ୍ଦେଶ (ଜ୍ଞାନ ଚୂଡ଼ାମଣି)

ଶ୍ରୀଜଗନ୍ନାଥଙ୍କ ପଦ୍ମଚରଣ

ଶିଶୁମତି କୃଷ୍ଣଦାସ ଶରଣ (ବୈଦ୍ୟଶାସ୍ତ୍ର)

(୩) ରାଗ କେଦାର ଚକ୍ରକେଳୀ ବାଣୀ : -

ରାଗ କେଦାର ଚକ୍ରକେଳୀ ବାଣୀ ପ୍ରତି କୃଷ୍ଣଦାସଙ୍କର ଦୁର୍ବଳତା ଥିବାର ଅନୁମିତ ହୁଏ । ରସ କଲ୍ଲୋଳର ତୃତୀୟ ଛାନ୍ଦକୁ ସେ ଏହି ବାଣୀରେ ରଚନା କରିଛନ୍ତି । ଯେମିତି

କର୍ଣ୍ଣେ ନନ୍ଦ-ସୁତ ହେବା ଶୁଣିଲେ

କଳାକର ମୁଖୀ ଗୋପୀ ଧାଇଁଲେ ।

କୃଷ୍ଣଦାସ ତାଙ୍କ ପ୍ରତି ପ୍ରସିଦ୍ଧ ନାବକେଳୀ ଗ୍ରନ୍ଥକୁ ଏହି ଛାନ୍ଦରେ ରଚନା କରିଛନ୍ତି । ଯଥା : -

ଦଉବ ଯେମନ୍ତ ହୋଇବ ସତ

ବୁକୁରେ ତୋର ମାଡ଼ିବସୁ ଭୂତ ।

କୃଷ୍ଣଦାସ ଅଳଙ୍କାର ବୋଲି ଗ୍ରନ୍ଥରେ ମଧ୍ୟ ଏହି ବାଣୀକୁ ପ୍ରୟୋଗ କରିଛନ୍ତି । ଯେମିତି

ସେ ଗୋ ଏହି ବୃନ୍ଦାବନେ ପଶିଲେ

ଯେତେ ଡାକିଲେ ଆଉ ନ ଆସିଲେ ।

ଜଗମୋହନ ଛାନ୍ଦରେ ଏହି ବାଣୀ ପ୍ରୟୋଗ କରି ସେ ଲେଖିଛନ୍ତି -

ଏ ଶରୀର ଇନ୍ଦ୍ରଜାଲ ସମାନ

ଦଣ୍ଡକେ ହୋଇଯିବ ଆନଆନ

ଚିତ୍ରକର ଚିତ୍ରପଟ ପରାଏ

ହୋଇଅଛି ଏ କ୍ଷଣଭଙ୍ଗ ଦେହେ ।

କୃଷ୍ଣଦାସଙ୍କ ବୈଦ୍ୟଶାସ୍ତ୍ର ସମଗ୍ରଭାବରେ ଏହି ଛନ୍ଦରେ ରଚିତ ହୋଇଛି । ବୈଦ୍ୟଶାସ୍ତ୍ରର କଷ୍ଟକର ଶବ୍ଦସମୂହକୁ ଅତ୍ୟନ୍ତ ସହଜ ଭାଷାରେ ରାଗ କେଦାର ଚକ୍ରକେଳୀ ବାଣୀରେ ସେ ରଚନା କରିଛନ୍ତି ।

(୪) କୃଷ୍ଣ ବା ବ୍ରହ୍ମ ବିଷୟକ ଗ୍ରନ୍ଥ ବ୍ୟତୀତ ଅନ୍ୟ ଶାସ୍ତ୍ର ଆଲୋଚନା :

କୃଷ୍ଣଦାସ ରସ ବିନୋଦ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଲେଖିଛନ୍ତି -

ଏଥି ଉତ୍ତାରେ ଗ୍ରନ୍ଥ ସାର । ଲକ୍ଷଣ ସ୍ତିରୀ ପୁରୁଷର
ନାରଦ ମୁନି ଆଗେ ଏହା । କହି ଅଛନ୍ତି ଚଉବାହା
ପ୍ରଚ୍ଛିନ୍ନ ପାଇଁ ଭାବ ଭେଦ । ତିନିଶ କୋଡ଼ିଏ ଯେ ପଦ ।

ରସ ବିନୋଦର ଏହି ପଦରୁ ଜଣାଯାଏ ଯେ କୃଷ୍ଣଦାସ ସ୍ତ୍ରୀ ପୁରୁଷ ଲକ୍ଷଣ ସମ୍ପର୍କରେ ତିନିଶ ଗୋଡ଼ିଏ ପଦ ବିଶିଷ୍ଟ ଗ୍ରନ୍ଥଟିଏ ରଚନା କରିଥିଲେ । ସ୍ତ୍ରୀ ପୁରୁଷ ଲକ୍ଷଣ ଗ୍ରନ୍ଥଟି ଧର୍ମଶାସ୍ତ୍ର ବିଷୟକ ନୁହେଁ ବରଂ ଏହା ଜ୍ୟୋତିଷଶାସ୍ତ୍ର ବିଷୟକ । ଆୟୁର୍ବେଦର ଶରୀର ପ୍ରକରଣମ୍ ଅଧ୍ୟାୟରେ ସାମାନ୍ୟ ସୂଚନା ପ୍ରଦାନ କରାଯାଇ ଥିଲେ ମଧ୍ୟ ଏହାକୁ ଆମେ ଜ୍ୟୋତିଷ ଶାସ୍ତ୍ର ମଧ୍ୟରେ ଗଣନା କରିବା ହିଁ ଉଚିତ ହେବ । କାରଣ କୃଷ୍ଣଦାସଙ୍କର ଆଉ କେତେକ ଜ୍ୟୋତିଷ ଶାସ୍ତ୍ର ବିଷୟକ ପୁସ୍ତକ ରହିଛି । ତାଙ୍କର ସାମୁଦ୍ରିକ ନାମକ ଗ୍ରନ୍ଥରେ ସେ ହସ୍ତରେଖା ସମ୍ପର୍କରେ ଆଲୋଚନା କରିଛନ୍ତି । ତାଙ୍କ ରଚିତ ଶ୍ୟାମଦୀଘା ବା ଶ୍ୟାମଦୀର୍ଘ ବୋଲି ଗ୍ରନ୍ଥ ମଧ୍ୟ ଏହି ହସ୍ତରେଖା ଦର୍ଶନ ପର୍ଯ୍ୟାୟର । ତାରିଣୀ ଚରଣ ରଥ କୃଷ୍ଣଦାସ ଉଜ୍ଜ୍ୱଳ ନୀଳମଣି କାରିକା ନାମକ ଗ୍ରନ୍ଥ ରଚନା କରିଥିଲେ ବୋଲି ସୂଚନା ଦିଅନ୍ତି । ଏହି "ଉଜ୍ଜ୍ୱଳ ନୀଳମଣି" କାରିକା ମଧ୍ୟ ଜ୍ୟୋତିଷଶାସ୍ତ୍ର ବିଷୟକ ।

କୃଷ୍ଣଦାସଙ୍କର ଜ୍ୟୋତିଶ ଶାସ୍ତ୍ରରେ ଯେଉଁଭଳି ବ୍ୟୁତ୍ପତ୍ତି ଥିଲା ଆୟୁର୍ବେଦ ଶାସ୍ତ୍ରରେ ମଧ୍ୟ ସେହିପରି ବ୍ୟୁତ୍ପତ୍ତି ଥିବାର ଅନୁମାନ କରାଯାଏ । ଉକ୍ତ ବୈଦ୍ୟଶାସ୍ତ୍ରକୁ ଛାଡ଼ିଦେଲେ ସେ 'ମାଧବକର ଗୀତା' ନାମରେ ଖଣ୍ଡିଏ ଗ୍ରନ୍ଥ ରଚନା କରିଥିବାର ତାରିଣୀ ଚରଣ ରଥ ସୂଚନା ଦିଅନ୍ତି । ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀରେ ମାଧବକର ନାମରେ ଜଣେ ଆୟୁର୍ବେଦ ଶାସ୍ତ୍ରବିତ୍ ଭାରତରେ ଜନ୍ମ ଗ୍ରହଣ କରିଥିଲେ । ଆୟୁର୍ବେଦର ଶ୍ରେଷ୍ଠ ଲକ୍ଷ୍ୟ ହେଲା ସୁସ୍ଥ ମଣିଷର ସ୍ୱାସ୍ଥ୍ୟରକ୍ଷା ଓ ରୋଗୀ ବ୍ୟକ୍ତିର ରୋଗର ପ୍ରତିକାର କରି ତାହାର ଜୀବନକୁ ରକ୍ଷା କରିବା, ବା ଆୟୁର ବୃଦ୍ଧି କରିବା । ଏହି ଉଦ୍ଦେଶ୍ୟର ପରିପୂରଣ ପାଇଁ ଆୟୁର୍ବେଦ ଶାସ୍ତ୍ର ତିନିଗୋଟି ସୂତ୍ର ଉପରେ ଗୁରୁତ୍ୱ ଦେଇଥାଏ । ସେହି ତିନିଗୋଟି ହେଲା (୧) ହେତୁ ଜ୍ଞାନ (୨) ଲିଙ୍ଗ ଜ୍ଞାନ ଓ (୩) ଔଷଧ ଜ୍ଞାନ ।

ଏହି ତିନିଗୋଟି ସୂତ୍ର ମଧ୍ୟରୁ ଲିଙ୍ଗ ଜ୍ଞାନ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ । କାରଣ ରୋଗର ସ୍ୱରୂପ ଜ୍ଞାତ ହେବା ପରେ ତାହାର କାରଣ ଓ ଔଷଧ ପ୍ରଦାନ ଦ୍ୱାରା ଚିକିତ୍ସା ସଫଳ ହୋଇଥାଏ । ଏହି ସବୁ କାରଣକୁ ଦୃଷ୍ଟିରେ ରଖି ଆଚାର୍ଯ୍ୟ ମାଧବ କର 'ରୋଗ

ବିନିଶ୍ଚୟ' ନାମକ ଏକ ଗ୍ରନ୍ଥ ରଚନା କରିଥିଲେ ଓ ଏହି ଗ୍ରନ୍ଥ 'ମାଧବ ନିଦାନମ୍' ନାମରେ ପ୍ରସିଦ୍ଧ ହେଲା । ମାଧବ ନିଦାନ ରେ କେବଳ ରୋଗର ହେତୁ, ଲକ୍ଷଣ ଓ ସମ୍ପ୍ରାପ୍ତି ଆଦି ଚରକ, ଶୁଶ୍ରୁତ ତଥା ବାଗ୍‌ଭଟ୍ଟ ଇତ୍ୟାଦିଙ୍କ ରଚନାକୁ ସଂଗ୍ରହ କରି ରଚିତ ହୋଇଛି । ମାଧବକର ସ୍ୱୟଂ ମଧ୍ୟ କେତେକ ରୋଗକୁ ସ୍ୱତନ୍ତ୍ର ଅଧ୍ୟାୟରେ ଆଲୋଚନା କରିଛନ୍ତି । କୃଷ୍ଣଦାସ ମାଧବକର ଗୀତାରେ ଏହିସବୁ ନିଦାନକୁ ପଦ୍ୟାକାରରେ ଲେଖିଥିବା ସମ୍ଭବ । ମାତ୍ର କୃଷ୍ଣଦାସଙ୍କ ବୈଦ୍ୟଶାସ୍ତ୍ର ମାଧବକର ଗୀତା ଠାରୁ ସ୍ୱତନ୍ତ୍ର । ବୈଦ୍ୟଶାସ୍ତ୍ରରେ ରୋଗ ଗୁଡ଼ିକର ନିଦାନ ପରିବର୍ତ୍ତେ ନାଡୀ ପରୀକ୍ଷା, ମୂତ୍ର ପରୀକ୍ଷା, ପାଚନ, ଚୂର୍ଣ୍ଣ, ରସ, ଅଞ୍ଜନ ଇତ୍ୟାଦି ସମ୍ପର୍କରେ ଆଲୋଚନା କରାଯାଇଛି ।

(୫) ରସ କଲ୍ଲୋଳରେ ଆୟୁର୍ବେଦ ବିଷୟକ ତଥ୍ୟ :

ରସକଲ୍ଲୋଳରେ ଏପରି କେତେକ କଥା କୁହାଯାଇଛି ଯାହାକୁ ପଢ଼ିଲେ କୃଷ୍ଣଦାସଙ୍କର ଆୟୁର୍ବେଦ ଶାସ୍ତ୍ର ସମ୍ପର୍କରେ ଜ୍ଞାନ ରହିଛି ବୋଲି ବୁଝିହୁଏ । ରସ କଲ୍ଲୋଳର ପଞ୍ଚବିଂଶ ଛାନ୍ଦରେ କୁହାଯାଇଛି -

କର୍ପୂର ନାରିକେଳ          ଅମ୍ବୁ କେଡ଼େ ଶୀତଳ
ପାନକୁ ମହା ସୁଖକର
କହୁଁ କହୁଁ ଯେମନ୍ତ          କରଇ ପ୍ରାଣ ଅନ୍ତ
ସେହି ରୂପେଟି ଖଳ ଗିର ହେ । ଆହେ ଜନେ

ଅର୍ଥାତ୍ କର୍ପୂର ଯେମିତିକା ଥଣ୍ଡା ନାରିକେଳର ଜଳ ସେମିତିକା ଥଣ୍ଡା । କର୍ପୂର ନାରିକେଳ ଜଳକୁ ମିଶାଇ ଥଣ୍ଡା ପାନୀୟ ଭାବରେ ବ୍ୟବହାର କଲେ ତାହା ବିଷାକ୍ତ ହୋଇଯାଇ ପ୍ରାଣ ନାଶ କରେ । ନାରିକେଳ ଜଳରେ କର୍ପୂର ମିଶାଇଲେ ତାହା ବିଷରେ ପରିଣତ ହୁଏ ବୋଲି କେବଳ ଚିକିତ୍ସାବିତ୍ ମାନେ ଜାଣିଥାଆନ୍ତି ।

ନବଗୁଡ଼ ଖୁବ୍ ମଧୁର ହୋଇଥାଏ, ମାତ୍ର ତାହାର ଅବିଗୁଣ ମଧ୍ୟ ବହୁତ ରହିଥାଏ । ଦୀର୍ଘ ବର୍ଷ ରହିଯାଇଥିବା ଗୁଡ଼ ପିତା ହେଲେ ମଧ୍ୟ ତାହାର ଅନେକ ଗୁଣ ଥାଏ ବୋଲି କବି କହିଛନ୍ତି ।

କେଡ଼େ ମଧୁର ନବ ଗୁଡ଼
କରଇ ଅବିଗୁଣ ବଡ଼

କାଳ ଦୀର୍ଘକୁ ପାଇ   କେତେ ଗୁଣ କରଇ

ଏଠାରେ ପିତାଭାବ ଛାଡ଼ ଗୋ ।

(ରସ କଲ୍ଲୋଳ ୨୬/୨୧ )

ବିଷ କେଉଁଠାରେ ଅଛି ବୋଲି ରସ କଲ୍ଲୋର ୧୬ଶ ଛାନ୍ଦରେ କବି କହିଛନ୍ତି -

କେ ବୋଲେ କ୍ଷେଡ଼ ଅଛି ଗରୁଡ଼ବଇରୀଠାବେ ବିଶେଷ ବଡ଼

କେ ବୋଲେ ଲେମ୍ଭୁ ଚନ୍ଦ୍ର ପଇଡ଼ସଙ୍ଗମେ ଅଛି ହେ (ର. କ. ୧୬/୨୪)

ରସକଲ୍ଲୋଳର ସେହି ଷୋଡ଼ଶ ଛାନ୍ଦରେ ଜ୍ୱର ରୋଗୀକୁ ଜଳ କେମିତି ଲାଗେ ସେ ସମ୍ପର୍କରେ ସୂଚନା ଦିଆଯାଇଛି । ବର୍ଷା ଋତୁର ବର୍ଣ୍ଣନା ସମୟରେ ସଂଯୋଗୀମାନେ କିପରି ଶୀତଳତା ଅନୁଭବ କରନ୍ତି ଓ ବିଯୋଗୀମାନେ କିପରି ବିକଳ ହୁଅନ୍ତି କବି ଜ୍ୱର ରୋଗ ସହିତ ତାହାର ତୁଳନା କରିଛନ୍ତି । ଜ୍ୱର ଥିବା ସମୟରେ ଜଳ ଦେହକୁ ଶୀତଳ ଲାଗିଥାଏ । ନିର୍ଜ୍ଜର ଲୋକ ଜଳ ନ ପାଇଲେ ବିକଳ ହୋଇଥାଏ ।

କଲା ସଂଯୋଗୀ ଜନେ ଶୀତଳ ବିଯୋଗୀଜନେ ହେଲେ ବିକଳ

ଜ୍ୱର ନିର୍ଜ୍ଜର ଦେହକୁ ଯେଉଁ ପ୍ରକାରେ ବନ ହେ  (ର. କ. ୧୬/୩)

ଜ୍ୱର ରୋଗରେ ଦେହ କିପରି କୃଶ ଓ ପାଣ୍ଡୁର ହୋଇଯାଏ ରସ କଲ୍ଲୋଳର ଚତୁର୍ଦ୍ଦଶ ଛାନ୍ଦରେ କବି ତାହାର ସୂଚନା ଦେଇଛନ୍ତି -

କୃଷ୍ଣ ବିରହ ଜ୍ୱରେ କେ ଦେହ କୃଶ ପାଣ୍ଡୁର କରି

କେଶ ବସନ ମଳିନ ଦୀନ ମନରେ ଅଛି ଧରି

କରି ଦୂଷଣ ଅଙ୍ଗଭୂଷଣ ବହଇ ନାହିଁ ଅଙ୍ଗେ

କୁରରୀ ପ୍ରାୟେ ଝୁରଇ ଭୟେ ପାଇବାର ଅନଙ୍ଗେ ।(ର.କ. ୧୪/୭)

(୬) ଶ୍ରୀମୁଖ ଆଜ୍ଞାରେ ପଦ ଲେଖନ :

କୃଷ୍ଣଦାସ ସର୍ବଦା କୃଷ୍ଣ ଜଗନ୍ନାଥଙ୍କ ଠାରେ ନିଜକୁ ସମର୍ପଣ କରିଆସିଛନ୍ତି । ରସକଲ୍ଲୋଳ ଠାରୁ ଆରମ୍ଭ କରି ରସ ବିନୋଦ ବା ଗୁଣ ସାଗର ଇତ୍ୟାଦିରେ ସେ ନିଜେ କାବ୍ୟମାନ ରଚନା କରିଛନ୍ତି ବୋଲି କେବେହେଲେ ଗର୍ବ ଅନୁଭବ କରିନାହାନ୍ତି । ସବୁବେଳେ ଶ୍ରୀମୁଖ ଆଜ୍ଞାରେ କାବ୍ୟମାନ ରଚନା କରିଛନ୍ତି ବୋଲି ବିନୀତ ଭାବରେ ସ୍ୱୀକାର କରିଛନ୍ତି । ବୈଦ୍ୟଶାସ୍ତ୍ରରେ କହିଛନ୍ତି -

ଶ୍ରୀମୁଖରେ ଆଜ୍ଞା ହୋଇଛି ଯାହା

ବୈଦ୍ୟମାନଙ୍କୁ କହୁଅଛି ତାହା । (ବୈଦ୍ୟଶାସ୍ତ୍ର)

ଏହି ପ୍ରସଙ୍ଗରେ ତାଙ୍କ ରଚିତ ଅନ୍ୟ କେତେକ ଗ୍ରନ୍ଥରୁ କିଛି ଉଦାହରଣ ପ୍ରଦାନ କରୁଛି ଯେଉଁଥିରୁ ସେ ଜଗନ୍ନାଥଙ୍କ ନିର୍ଦ୍ଦେଶରେ ପଦ ରଚନା କରୁଛନ୍ତି ବୋଲି କହିଛନ୍ତି ବୋଲି ଜାଣିହେବ ତଥା ପଦସାମ୍ୟ ଥିବା ଯୋଗୁଁ ବୈଦ୍ୟଶାସ୍ତ୍ରକୁ ରସ କଲ୍ଲୋଳକାର କୃଷ୍ଣଦାସ ରଚନା କରିଛନ୍ତି ବୋଲି ଅନୁଭବ କରିହେବ ।

ରସ ବିନୋଦର ଶେଷ ଅଧ୍ୟାୟରେ ସେ ଲେଖିଛନ୍ତି -

କୃପାସାଗର କୃପା କଲେ । ଶ୍ରୀପଦ୍ମମୁଖେ ଆଜ୍ଞା ଦେଲେ

ତେଣୁ ସେ ଯୋଡ଼ିଲି ଏ ପଦ । ବିଷୟାବିଷକୁ ଏ ଗଦ ।

ରସ କଲ୍ଲୋଳରେ କବି କହିଛନ୍ତି -

କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ

କରନ୍ତି ପୂର୍ଣ୍ଣ ଜନ ମନୋରଥ

କଲି ମୁଁ ଏହି ଘେନି ଅଭିମତ

କରିବାକୁ ରସ କଲ୍ଲୋଳ ଗୀତ

କହିଲେ ସେ ଯେଣୁ

କରରେ ମାତ୍ର ମୁଁ ଲେଖିଲି ତେଣୁ (ରସ କଲ୍ଲୋଳ)

ଈଶ୍ୱର କାହିଁକି କବିଙ୍କ ହୃଦୟରେ ପଶି ତାଙ୍କୁ ପଦମାନ ସବୁ କହି ଦେଉଥାଆନ୍ତି ଗୁଣ ସାଗର ଗ୍ରନ୍ଥରେ କୃଷ୍ଣଦାସ ତାହାକୁ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ସେଥିରେ ଉଲ୍ଲିଖିତ ଅଛି ଯେ କବି ଦିନୁଟିଏ ପଦ ଯୋଡ଼ିଦେଲେ ଯେଉଁ ପୁଣ୍ୟ ସଞ୍ଚୟ କରନ୍ତି ତାହା କୋଟିଏ ଅଶ୍ୱମେଧ ଯଜ୍ଞର ପୁଣ୍ୟଠାରୁ ବି ଅଧିକ । ଗୁଣ ସାଗରରେ କବି ଲେଖିଛନ୍ତି -

ଦିନେ ମୁଁ ପ୍ରଭୁଙ୍କୁ ଏମନ୍ତ ବୋଇଲି ଶୁଣ ହେ କରୁଣାନିଧି

କେମନ୍ତ ପ୍ରକାରେ କବିତ୍ୱପଣରେ ପ୍ରସରଇ ଦିବ୍ୟବୁଦ୍ଧି ।

ଧନଜନ ଦାରା ସମ୍ପଦରେ ମୋହ ବିଷୟାଦି ସବୁଖେଦ

ଏଡ଼େ ମହାନନ୍ଦ ଆଶ୍ରିତ ହେବାରୁ କାହିଁ ପୂର୍ଣ୍ଣ ହେବ ପଦ ।

କବିଙ୍କର କଥା ଶୁଣି ପ୍ରଭୁ କହିଲେ ଯେ ତାଙ୍କର ଯେଉଁ ଭକ୍ତମାନେ ପୂର୍ବ ଜନ୍ମରେ ମୁନି ଥିଲେ ତାଙ୍କର ମହିମା ଘେନି ସେ ଆଣି ତାଙ୍କୁ ମର୍ତ୍ତ୍ୟରେ ଜନ୍ମ କରାଇଲେ । ସେଇଥିପାଇଁ

ସେହି ଭକ୍ତମାନେ ଈଶ୍ୱରଙ୍କ ପାଦରେ ମତି ରଖି କବିତାର ପଦମାନ ରଚନା କରନ୍ତି । ସେହି କବିମାନେ ଈଶ୍ୱରଙ୍କୁ ଭଜିଲେ ଈଶ୍ୱର ତାହା ଜାଣିପାରନ୍ତି । ଶାନ୍ତି, ଧୈର୍ଯ୍ୟ, ବିବେକ ଆଦି ଦୈବଗୁଣକୁ ଈଶ୍ୱର କବିଙ୍କର ହୃଦୟରେ ଥୋଇଛନ୍ତି । ଈଶ୍ୱର କବିଙ୍କର ହୃଦୟରେ ପଶି ନିଜେ ହିଁ ପ୍ରକାଶିତ ହୋଇଥାଆନ୍ତି । କୃଷ୍ଣଦାସ କହୁଛନ୍ତି -

ତେଣୁକରି ମୁହିଁ ପ୍ରକାଶ ହୁଅଇ କବିଙ୍କ ହୃଦରେ ପଶି
ଯହିଁକି ଯେ ପଦ ଯେମନ୍ତ ଘଟଇ କହି ଦେଉଥାଇ ବସି ।
ବିଷୟ ରସରେ ଯେ ସବୁ କବିତା ପଦ ବିସ୍ମରିଲେ ହେଲେ
ସେହି ପାଶୋରିଲେ ମୁହିଁ ନ ଛାଡ଼ଇ କହି ଦେଉଥାଇ ହେଲେ ।

(୭) ଭାଷା ପ୍ରୟୋଗର ବିଶିଷ୍ଟତା :

କହେ କୃଷ୍ଣଦାସ କବି ନାମକ ଗ୍ରନ୍ଥରେ କୃଷ୍ଣ ଚରଣ ସାହୁ ଭାଷା ପ୍ରୟୋଗର ବିଶିଷ୍ଟତା ଶୀର୍ଷକରେ କୃଷ୍ଣଦାସଙ୍କର ଭାଷା ପ୍ରୟୋଗରେ କେତେକ ବୈଶିଷ୍ଟ୍ୟ ଲକ୍ଷ୍ୟ କରିଛନ୍ତି । କ୍ରିୟା ପଦର ଶେଷରେ କ ଯୋଗ କରି କ୍ରିୟା ସବୁ ସୃଷ୍ଟି କରିବାକୁ ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ ଭାବରେ ଗ୍ରହଣ କରି କେତେକ ଗ୍ରନ୍ଥରୁ ତାହାର ଉଦାହରଣ ମଧ୍ୟ ପ୍ରଦାନ କରିଛନ୍ତି । ଯେମିତି ରସ ବିନୋଦରେ -

ବିଷ୍ଣୁଙ୍କୁ କଲାକ ଦର୍ଶନ (ପୃ - ୧୩)
ସେ ତାକୁ ପାଳିଲାକ ଶ୍ରେଷ୍ଠ - (ପୃ - ୨୮୧)

ନାମରତ୍ନ ଗୀତାରେ - ସାର କରି ଅସାର କଲାକ ବୃଷକେତୁ (ପୃ - ୧୬)
ଅବଶ୍ୟ ଏମନ୍ତ ବୋଲି କରିବାକ ଲୟେ (ପୃ - ୨୨)

ପ୍ରସ୍ତାବ ସିନ୍ଧୁରେ -

ପ୍ରବେଶ କଲାକ ନାବ ଭିତରେ ( ପୃ - ୩୧)
ଏଣେ ଯେ ଖବର ଦେଲାକ ବସି ( ପୃ - ୪୪)

ଗୁଣ ସାଗରରେ -

ବହୁତ ନିନ୍ଦିଣ ପ୍ରହ୍ଲାଦ ବୀରକୁ ସ୍ଥାନରୁ ଦେଲାକ କାଢ଼ି( ପୃ - ୧୯)
ବିଷ୍ଣୁଦୂତମାନେ ବ୍ରାହ୍ମଣକୁ ଆସି ବେଢ଼ିଲେକ ସେହିକ୍ଷଣି (ପୃ - ୩୦)

ଭୂତକେଳିରେ -

ବିନୟ ହୋଇଣ ସ୍ତୁତି କରିବାକ ଯାଇଁ (ପୃ - ୨୫)

ଶ୍ରୀହରିଙ୍କ ଉଦରକୁ ଦେଲେକ ଅନାଇଁ (ପୃ - ୩୭)

ଠିକ୍ ସେହିପରି ବୈଦ୍ୟଶାସ୍ତ୍ରରେ ମଧ୍ୟ କେତେକ ସ୍ଥାନରେ କ୍ରିୟାରେ କ ଯୋଗ କରାଯାଇ ପଦ ଗଠନ କରାଯାଇଛି । ଅନେକତ୍ର କ୍ରିୟା ଭିନ୍ନ ଅନ୍ୟ ଶବ୍ଦରେ ମଧ୍ୟ କ ପ୍ରଯୁକ୍ତ କରାଯାଇଛି ।

କ୍ରିୟାରେ କ ଯୁକ୍ତ -

ତହିଁ ନ ଛାଡ଼ିଲେ ଦେବାକ ରସ (ବୈଦ୍ୟଶାସ୍ତ୍ର)

ପଳାଶ ମଞ୍ଜି କରିବାକ ଠୁଳ (ବୈଦ୍ୟଶାସ୍ତ୍ର)

କେହୁଣି ପ୍ରକାରେ ନୋହିବାକ ସାଧ୍ (ବୈଦ୍ୟଶାସ୍ତ୍ର)

କ୍ରିୟାଭିନ୍ନ ଅନ୍ୟ ଶବ୍ଦରେ କ ଯୁକ୍ତ -

କୁକୁଡ଼ୁଲା ପୋକ ପ୍ରାୟେକ ହୋଇ (ବୈଦ୍ୟଶାସ୍ତ୍ର)

ଆରେକ କଥାଏ କହିବା ଶୁଣ (ବୈଦ୍ୟଶାସ୍ତ୍ର)

ଚିତାମୂଳରୁ ମା୧ଛେକ ଭର (ବୈଦ୍ୟଶାସ୍ତ୍ର)

କଫକେତୁ ରସ ଏତେକ ଗୁଣ (ବୈଦ୍ୟଶାସ୍ତ୍ର)

ବୈଦ୍ୟଶାସ୍ତ୍ରର କବିଙ୍କୁ ରସ ବିନୋଦ ଓ ରସ କଲ୍ଲୋଳର କୃଷ୍ଣଦାସଙ୍କ ସହିତ ସମାନ କରିବା ପାଇଁ ଯେତିକି ପ୍ରମାଣ ଏହି ମୁଖବନ୍ଧରେ ଉପସ୍ଥାପନ କରାଗଲା ବୈଦ୍ୟଶାସ୍ତ୍ରର ରଚୟିତା କୃଷ୍ଣଦାସ ବୋଲି ଜାଣିବା ପାଇଁ ସେତିକି ପ୍ରମାଣ ଯଥେଷ୍ଟ ହେବ । ଏ ଦୁଇଜଣ ଭିନ୍ନ ବ୍ୟକ୍ତି ବୋଲି ମୋ ମନରେ ତିଳେ ମାତ୍ର ସନ୍ଦେହ ଉପୁଜି ନାହିଁ । ପାଠକମାନଙ୍କୁ ଅନୁରୋଧ ସେମାନେ କୃଷ୍ଣଦାସଙ୍କୁ (ଦୀନ) ବୈଦ୍ୟଶାସ୍ତ୍ରର ରଚୟିତା ଭାବରେ ଗ୍ରହଣ କରିନେଲେ ତାଙ୍କର ମହାନ୍ ପାଣ୍ଡିତ୍ୟକୁ ଅଭିଜ୍ଞାତ ହେବାକୁ ସହଜ ହୋଇପାରିବ ।

ଏବେ ଆମେ କବିଙ୍କ ସମ୍ପର୍କିତ ଅନ୍ୟ ପ୍ରସଙ୍ଗକୁ ଆସିବା । କୃଷ୍ଣଦାସ ଥିଲେ ଜଣ ଅଦ୍ୱିତୀୟ ବିଦ୍ୱାନ୍, ଅପରାଜେୟ ପଣ୍ଡିତ ଅକୃତ୍ରିମ ଭକ୍ତ । ସଂସ୍କୃତ ସାହିତ୍ୟରେ ମଧ୍ୟ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଥିଲା । ପ୍ରସ୍ତାବ ସିନ୍ଧୁର କେତେକ ସଂସ୍କୃତ ଶ୍ଳୋକ ସେ ନିଜେ ସୃଷ୍ଟି କରିଥିଲେ । ଆର୍ତ୍ତତ୍ରାଣ ଚଉତିଶାକୁ ସେ ସଂସ୍କୃତରେ ରୂପାନ୍ତରିତ କରିଥିଲେ । ଆଲୋଚିତ ବୈଦ୍ୟଶାସ୍ତ୍ରରେ ମଧ୍ୟ ସେ କିଛି ଶ୍ଳୋକର ସ୍ରଷ୍ଟା । ରସକଲ୍ଲୋଳ ଭଳି ଏକ ଦିବ୍ୟ ଅଦିବ୍ୟ ଭାଷାରେ ଲାଳିତ୍ୟପୂର୍ଣ୍ଣ ପଦ ରଚନା କରି ଲଳିତ କାବ୍ୟ ସମ୍ଭାରର ମୂଳଦୁଆ ସ୍ଥାପନ କରିଥିଲେ । ଏସବୁ ସତ୍ତ୍ୱେ ବି ଅହଙ୍କାର ପରିବର୍ତ୍ତେ ତାଙ୍କ

ନିକଟରେ ଭରି ରହିଥିଲା ବିନୀତ ଓ ବିନମ୍ର ଗୁଣ ସମୂହ । ସେଇଥିପାଇଁ ସେ ପଣ୍ଡିତ ହୋଇ ବି ନିଜକୁ ଅପଣ୍ଡିତ ଭାବରେ ପରିଚିତ କରାଇବାକୁ  ବୟସ୍କ ବୁଦ୍ଧିଯୁକ୍ତ ହୋଇ ବି ନିଜକୁ ଶିଶୁମତି  ଭାବରେ ଜଣାଇବାକୁ, ଅପାଙ୍‌କ୍ତେୟ ନ ହୋଇ ମଧ୍ୟ ନିଜକୁ ଛାର ବୋଲି ସମ୍ବୋଧନ କରିବାକୁ ତଥା ଦୀନ ଭାବରେ ଉଲ୍ଲିଖିତ କରାଇବାକୁ ଉଚିତ ମଣିଥିଲେ । କେବଳ କୃଷ୍ଣଦାସ ନୁହନ୍ତି ସେ ସମୟର ବହୁ କବି ନିଜକୁ ଦୀନହୀନ ବୋଲି କହି ଫଳ ଭାରରେ ଗଛ ନଇଁ ଆସିଲା ପରି ନଇଁ ଆସୁଥିଲେ । କୃଷ୍ଣଦାସ ଏହା ଜାଣି ନ ଥିଲେ ଯେ ତାଙ୍କର ପରବର୍ତ୍ତୀ ବଂଶଧର ସେହି କାରଣକୁ ତାଙ୍କର ନାମକୁ କୃଷ୍ଣଦାସ ବୋଲି ନ କହି ଦୀନକୃଷ୍ଣ ଦାସ ବୋଲି ଧରିବସିବେ ।

ଯେତେ ଦୁଃଖ ଲାଗିଲେ ବି ତାଙ୍କ ନାମ ପୂର୍ବରୁ ଦୀନ ଶବ୍ଦକୁ ଉଠାଇବାର ଉପାୟ ମଧ୍ୟ ଆଉ ନାହିଁ । ଦୀନ ଶବ୍ଦକୁ ପୂର୍ବରେ ବ୍ୟବହାର କରାଯାଇ ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ, କବି ଦୀନକୃଷ୍ଣ, ଭକ୍ତକବି ଦୀନକୃଷ୍ଣ ଓ ଅନନ୍ୟ ଦୀନକୃଷ୍ଣ ପରି ଅନେକ ଗ୍ରନ୍ଥ ରଚିତ ହୋଇସାରିଲାଣି । ତାଙ୍କ ଜନ୍ମସ୍ଥାନ ନିକଟରେ ଗଢ଼ି ଉଠିଥିବା ପ୍ରତିଷ୍ଠିତ କଲେଜଟି କୃଷ୍ଣଦାସଙ୍କ ନାମରେ ନାମିତ ନ ହୋଇ ଦୀନକୃଷ୍ଣ ମହାବିଦ୍ୟାଳୟ ନାମରେ ନାମିତ ହୋଇସାରିଛି । ଏମିତି ଭାବରେ ନାମିତ ହୋଇସାରିବା ପରେ ଅନିଚ୍ଛାକୃତ ଓ ଦୁଃଖପୂର୍ଣ୍ଣ ହୃଦୟରେ ଆମେ ତାଙ୍କୁ ଦୀନକୃଷ୍ଣ ଭାବରେ ସ୍ୱୀକାର କରିବାକୁ ବାଧ୍ୟ ହେଉଛୁ ।

କବିଙ୍କୁ ଆମେ କେମିତି ଭାବରେ ସମ୍ମାନ ଦେଖାଇଛୁ ଏହା ତାହାର ଏକ ନିଦର୍ଶନ ମାତ୍ର । ତାଙ୍କ ପ୍ରତି ଆମ ସମ୍ମାନର ଦ୍ୱିତୀୟ ନିଦର୍ଶନ ହେଲା ତାହାଙ୍କୁ କୁଷ୍ଠ ରୋଗୀ ଭାବରେ ବର୍ଣ୍ଣନା କରିବା । ଆର୍ତ୍ତବଲ୍ଲଭ ମହାନ୍ତି, ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ), ସୂର୍ଯ୍ୟନାରାୟଣ ଦାସ, ଡଃ ମାୟାଧର ମାନସିଂହ, ପଠାଣି ପଟ୍ଟନାୟକ, ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ପଙ୍କଜ ସାହୁଙ୍କ ପର୍ଯ୍ୟନ୍ତ ସମସ୍ତେ କବିଙ୍କ କିମ୍ବଦନ୍ତୀକୁ ଅନୁସରଣ କରି ତାଙ୍କୁ  କୁଷ୍ଠରୋଗାକ୍ରାନ୍ତ ବୋଲି ଆଖ୍ୟାୟିତ କରିଛନ୍ତି । ସେହି କିମ୍ବଦନ୍ତୀଟି କେଉଁଠାରୁ ସୃଷ୍ଟି ହେଲା, ତାହା ଲିଖିତ କିମ୍ବଦନ୍ତୀ ନା ମୌଖିକ କିମ୍ବଦନ୍ତୀ, ସତ୍ୟ ଉପରେ ଆଧାରିତ ଅବା ମନଗଢ଼ା, ତାହାକୁ ଧ୍ୟାନ ନ ଦେଇ ଜଣେ ସୁସ୍ଥ ସବଳ ଲୋକକୁ କୁଷ୍ଠରୋଗୀ ଭାବରେ ପରିଚିତ କରାଇ

ଦେବାର ଅନ୍ତରାଳରେକେତେ ଯେ ଦୁଃସହନୀୟ ଦୁଃଖ ରହିଛି, ତାକୁ ସ୍ୱର୍ଗରେ ଥାଇ କେବଳ କୃଷ୍ଣଦାସ ହିଁ ଅନୁଭବ କରିପାରୁଥିବେ ।

ଆମ ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଶ୍ରୀ ପଠାଣି ପଟ୍ଟନାୟକ, ଡକ୍ଟର ରତ୍ନାକର ଚଇନି ଓ ଡକ୍ଟର ବୈଷ୍ଣବ ଚରଣ ସାମଲଙ୍କ ସମ୍ପାଦନାରେ ୧୯୯୮ ମସିହାରେ ଭକ୍ତ କବି ଦୀନକୃଷ୍ଣ ନାମକ ଏକ ଗ୍ରନ୍ଥ ସଙ୍କଳିତ ହୋଇଛି । ସେଥିରେ ଶ୍ରୀ ମଧୁସୂଦନ ମହାପାତ୍ର 'ଦୀନକୃଷ୍ଣ ରୋଗାକ୍ରାନ୍ତ ଥିଲେ କି ?' ଶୀର୍ଷକରେ ପ୍ରବନ୍ଧଟିଏ ରଚନା କରିଛନ୍ତି । କୃଷ୍ଣଦାସଙ୍କୁ ସମ୍ମାନ ଜଣାଇବାରେ ସେ ସର୍ବଶ୍ରେଷ୍ଠ ଆଗୁଆ ହୋଇ ବହୁ ଭ୍ରମାତ୍ମକ ତଥ୍ୟ ସଂଗ୍ରହ କରି କବିଙ୍କୁ କୁଷ୍ଠରୋଗୀ ଭାବରେ ପ୍ରମାଣ କରାଇବାର ବହୁ ଉଦ୍ୟମ କରିଛନ୍ତି ।

ଶ୍ରୀ ମହାପାତ୍ର ସମ୍ମାନ ପ୍ରଦର୍ଶନ କରିବାର ସମସ୍ତ ସୀମା ଅତିକ୍ରମ କରିଯାଇ ପ୍ରବନ୍ଧର ଏକ ସ୍ଥାନରେ ଲେଖିଛନ୍ତି - "କବି କୁଷ୍ଠରୋଗାକ୍ରାନ୍ତ ହୋଇଥିବା ସମୟରେ ପ୍ରତିଦିନ ସମୁଦ୍ର ଉପକୂଳରେ ବସି ଭିକ୍ଷାବୃତ୍ତି କରୁଥିଲେ ଓ ଗରୁଡ଼ ସ୍ତମ୍ଭ ନିକଟରେ ବସି ସକାଳ, ମଧ୍ୟାହ୍ନ ଓ ଅପରାହ୍ନରେ ଜଣାଣ ପଢୁଥିଲେ ।" କୃଷ୍ଣଦାସଙ୍କୁ କୁଷ୍ଠରୋଗୀ ଭାବରେ ପ୍ରମାଣ କରିବା ପାଇଁ ଶ୍ରୀ ମହାପାତ୍ର ଯେଉଁ ଯୁକ୍ତିମାନ ଉପସ୍ଥାପନ କରିଛନ୍ତି ସେହି ଯୁକ୍ତିଗୁଡ଼ିକ କିପରି ଅସାର ତାହା ନିମ୍ନରେ ପାଠକମାନଙ୍କ ପାଇଁ ପ୍ରଦତ୍ତ ହେଲା ।

(୧) ସେ ଲେଖିଛନ୍ତି ଯେ, କୁଷ୍ଠରୋଗ ପ୍ରତି ଲୋକଙ୍କର ଏକ ଅଜଣା ଅହେତୁକ ଭୟ ରହିଥିବାରୁ ଜାଣିଶୁଣି କବି ଦୀନକୃଷ୍ଣ ବ୍ୟାଧିଗ୍ରସ୍ତ ହୋଇଥିବା ବିଷୟ ତାଙ୍କର କୌଣସି ଲେଖାରେ ସ୍ପଷ୍ଟ ଭାବେ ଉଲ୍ଲିଖିତ କରି ନାହାନ୍ତି । ତାଙ୍କର ମତକୁ ଅଧିକ ଯୁକ୍ତିଯୁକ୍ତ କରିବା ପାଇଁ କାନ୍ତ କବି ଲକ୍ଷ୍ମୀକାନ୍ତ ମହାପାତ୍ର ଯୌବନରୁ କୁଷ୍ଠରୋଗାକ୍ରାନ୍ତ ହେଲେ ମଧ୍ୟ କୌଣସି ସ୍ଥାନରେ ଦୁରାରୋଗ୍ୟ ବ୍ୟାଧିର ନାମୋଲ୍ଲେଖ ନ କରିଥିବା କଥା ତୁଳନାତ୍ମକ ଭାବରେ ପ୍ରଦାନ କରିଛନ୍ତି । ଶ୍ରୀ ମହାପାତ୍ରଙ୍କର ଏହି ଯୁକ୍ତିରେ ସଂଗତି କିଛି ନାହିଁ । କାନ୍ତକବିଙ୍କ ସମୟ ଓ କୃଷ୍ଣଦାସଙ୍କ ସମୟ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଛି । କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର କୌଣସି ସ୍ଥାନରେ ଭଣିତା ପ୍ରଦାନ କରିନାହାନ୍ତି । ତାଙ୍କର ଘର କିମ୍ବା ପରିବାର ସମ୍ପର୍କରେ ମଧ୍ୟ କିଛି ଉଲ୍ଲେଖ କରି ନାହାନ୍ତି । ପରନ୍ତୁ ଛଳନାହୀନ କୃଷ୍ଣ ନିଜେ ଯାହା, ତା ଠାରୁ ନିଜକୁ ଅଧିକ ନ୍ୟୂନ କରି ପାଠକଙ୍କ

ଆଗରେ ପରିବେଷଣ କରିବାକୁ ସର୍ବଦା ଚେଷ୍ଟା କରିଛନ୍ତି । ଯଦି ସେ କୁଷ୍ଠ ରୋଗାକ୍ରାନ୍ତ ହୋଇଥାଆନ୍ତେ ବା ତାଙ୍କୁ କିଏ ଲେଖିବାରେ ସାହାଯ୍ୟ କରିଥାଆନ୍ତା, ତେବେ ସେ ସମ୍ପର୍କରେ ସେ ଅହଙ୍କାର ଶୂନ୍ୟ ହୋଇ ନିଶ୍ଚିତ ଭାବରେ ଉଲ୍ଲେଖ କରିଥାଆନ୍ତେ ।

(୨) ଶ୍ରୀ ମହାପାତ୍ର ରସ କଲ୍ଲୋଳରୁ ଏକ ଉଦାହରଣ ଦେଇଛନ୍ତି -

କୋଟି ବ୍ରହ୍ମାଣ୍ଡରେ ଏମନ୍ତ ଠାକୁର ଥିବାର ଶୁଣିଛ କାହିଁ ।
କୁତ୍ସିତ ଲୋକ ହିଁ ପରମ ପଦ ହିଁ ଲଭନ୍ତି ଯାହାକୁ ଚାହିଁ ।

ଏଠାରେ ଶ୍ରୀ ମହାପାତ୍ର କୁତ୍ସିତ ଶବ୍ଦର ଅର୍ଥକୁ କଦାକାର କୁଷ୍ଠବ୍ୟାଧି ଗ୍ରସ୍ତ ଲୋକ ଭାବରେ ବ୍ୟାଖ୍ୟା କରିଛନ୍ତି । ମାତ୍ର କବି କୃଷ୍ଣଦାସ ରସ କଲ୍ଲୋଳରେ କୁତ୍ସିତ ଶବ୍ଦକୁ ଖରାପ ଅର୍ଥରେ ବ୍ୟବହାର କରିଛନ୍ତି ଯେମିତି : -

କର୍ପୂର ଚନ୍ଦନ ଦେଇ     ରସୁଣ ରୋପିଲେ ନେଇ
କେତେବେଳେ ଛାଡ଼ଇ କୁତ୍ସିତ ବାସନା ? (ର.କ. ୨/୧୩)

କୃପଣ ଜନ ଧନ     ଭୋଗ ନୋହିଲେ ମନ
ହୁଅଇ ଆନନ୍ଦରେ ସୁଖୀ

କୁତ୍ସିତ ଗ୍ରାମେ ଥିଲେ     ମହାପଣ୍ଡିତ ହେଲେ
କି କି ହୋଇ ହୁଅଇ ଦୁଃଖୀ ସେ । ଆଗୋ ସଖୀ ।(ର.କ. ୨୫/୨୪)

ଏଠାରେ ବାସନା ଓ ଗ୍ରାମର ବିଶେଷଣ ଭାବରେ ବ୍ୟବହାର କରାଯାଇଥିବା କୁତ୍ସିତ ଶବ୍ଦ କଣ କୁରୂପ ଅର୍ଥରେ ବ୍ୟବହାର କରାଯାଇଛି ?

(୩) ଶ୍ରୀ ମହାପାତ୍ର ଲେଖିଛନ୍ତି ଯେ କୁଷ୍ଠରୋଗାକ୍ରାନ୍ତ ହେତୁ ଦୀନକୃଷ୍ଣଙ୍କୁ ମନ୍ଦିର ପ୍ରବଶ ମନା ଥିବାରୁ ସେ ପ୍ରତିଦିନ ଆର୍ତ୍ତତ୍ରାଣ ଚଉତିଶା ଜଗନ୍ନାଥ ମନ୍ଦିର ସମ୍ମୁଖ ଭାଗରେ ଥିବା ଗରୁଡ଼ ସ୍ତମ୍ଭର ନିକଟରେ ଅତି ବିକଳ ଭାବେ ଗାନ କରୁଥିଲେ । ଗରୁଡ଼ସ୍ତମ୍ଭ ନିକଟରେ ବସି ସକାଳ ମଧାହ୍ନ ଓ ଅପରାହ୍ନରେ ଜଣାଣ ପଢୁଥିବାରୁ ପ୍ରଚୁର ପରିମାଣରେ ସୂର୍ଯ୍ୟକିରଣ ତାଙ୍କ ଉପରେ ପଡୁଥିଲା ।

ଶ୍ରୀ ମହାପାତ୍ରଙ୍କ ଏହି ଯୁକ୍ତିଟି ଅତ୍ୟନ୍ତ ପିଲାଳିଆ । ଗରୁଡ଼ ସ୍ତମ୍ଭଟି ମନ୍ଦିର ଭିତରେ ଜଗନ୍ନାଥଙ୍କର ସମ୍ମୁଖ ଭାଗରେ ଅବସ୍ଥିତ । ଯଦି ତାଙ୍କୁ ମନ୍ଦିର ମନା ହୋଇଥାଆନ୍ତା ତେବେ ସେ ଗରୁଡ଼ସ୍ତମ୍ଭ ନିକଟକୁ କେବେ ଯାଇ ପାରି ନ ଥାଆନ୍ତେ ।

ଭକ୍ତମାନେ ବିଶେଷ ଭାବରେ ଗରୁଡ଼ ସ୍ତମ୍ଭ ନିକଟରେ ଠିଆ ହୋଇ ସମର୍ପଣ ମୁଦ୍ରାରେ ଧ୍ୟାନ କରିଥାଆନ୍ତି । ଗରୁଡ଼ ସ୍ତମ୍ଭଟି ମନ୍ଦିରର ମଧ୍ୟରେ ଥିବାରୁ ସେଠାରେ ସକାଳ ମଧ୍ୟାହ୍ନ ବା ଅପରାହ୍ନରେ ସୂର୍ଯ୍ୟକିରଣ ପଡ଼ିବା ବି ଅସମ୍ଭବ । ତେଣୁ ଗରୁଡ଼ ସ୍ତମ୍ଭ ସହିତ କୁଷ୍ଠରୋଗକୁ ଯୋଡ଼ିବା କଥାଟି ଯେମିତି ଅସଙ୍ଗତ, ପ୍ରଚଣ୍ଡ ସୂର୍ଯ୍ୟତାପରେ କବିଙ୍କର କୁଷ୍ଠରୋଗ ଭଲ ହୋଇଯିବା କଥା ସେତିକି ଭ୍ରମାତ୍ମକ । ଶ୍ରୀ ମହାପାତ୍ର ଲେଖିଛନ୍ତି ଯେ ପ୍ରଚଣ୍ଡ ସୂର୍ଯ୍ୟ ତାପରେ ତାଙ୍କର କୁଷ୍ଠରୋଗ ଭଲ ହୋଇଯାଇଥିଲା । ଯମ ବା ଶାମ୍ବଙ୍କର କୁଷ୍ଠରୋଗଭଲ ହୋଇଯିବା ଆଖ୍ୟାନ ପୌରାଣିକ । ଯଦି ସୂର୍ଯ୍ୟ ସ୍ନାନରେ କୁଷ୍ଠ ଭଲ ହୋଇଯାଉଥାଆନ୍ତା ତେବେ ପୃଥିବୀରୁ କୁଷ୍ଠରୋଗ କେବେଠାରୁ ଲୋପ ପାଇ ଯାଇ ସାରନ୍ତାଣି । ଆଉ ଏମ.ଡି.ଟି. ଉଦ୍ଭାବିତ ହେବାର ଆବଶ୍ୟକତା ନ ଥାନ୍ତା ।

(୪) ଶ୍ରୀ ମହାପାତ୍ର ଲେଖିଛନ୍ତି ଯେ କବିଙ୍କ ଆତ୍ମୀୟସ୍ୱଜନ ଏବଂ ପରିବାରର ଲୋକେ ତାଙ୍କୁ ପରିବାର ମଧ୍ୟରୁ ତ୍ୟାଗ କରିଥିବାର ଅନ୍ୟତମ କାରଣ କୁଷ୍ଠରୋଗ । ଏହା ମଧ୍ୟ ଶ୍ରୀ ମହାପାତ୍ରଙ୍କର ଦାୟିତ୍ୱହୀନ ମନ୍ତବ୍ୟ ବୋଲି ବୁଝିବାକୁ ହେବ । କାରଣ କବିଙ୍କର ଅତ୍ୟଧିକ ଭକ୍ତିଭାବ, ଜଗନ୍ନାଥଙ୍କ ପ୍ରତି ଅନନ୍ୟ ଆସକ୍ତି ତାଙ୍କୁ ପୁରୀମୁଖୀ କରାଇଥିଲା ।

(୫) ସୁରେନ୍ଦ୍ର ମହାନ୍ତି 'କବି' ଗଳ୍ପରେ କୁଷ୍ଠରୋଗାକ୍ରାନ୍ତ ଦୀନକୃଷ୍ଣଙ୍କୁ ଗଳ୍ପର ନାୟକ କରିଛନ୍ତି ବୋଲି ଦର୍ଶାଇ ଶ୍ରୀ ମହାପାତ୍ର ତାଙ୍କର ଯୁକ୍ତିକୁ ଅଧିକ ଦୃଢ଼ କରିଛନ୍ତି । ମାତ୍ର ବୁଝିବାକୁ ହେବ ଯେ ସୁରେନ୍ଦ୍ର ମହାନ୍ତି ବିଂଶ ଶତାବ୍ଦୀର ଗାଳ୍ପିକ । ଗବେଷକମାନଙ୍କର ଦୀନକୃଷ୍ଣଙ୍କ ସମ୍ପର୍କୀୟ ଏହି ଭ୍ରମାତ୍ମକ ତଥ୍ୟକୁ ଶୁଣି ଶୁଣି ସେ ମଧ୍ୟ ତତ୍ ସମ୍ପର୍କୀୟ କାହାଣୀ ଲେଖିବାରେ ମନୋନିବେଶ କରିଥିଲେ । ମାତ୍ର କାହାଣୀକୁ କେବେହେଲେ ଇତିହାସ ବୋଲି ଧରାଯାଇ ପାରିବ ନାହିଁ । ତା ବ୍ୟତୀତ ସୁରେନ୍ଦ୍ର ମହାନ୍ତି କାହାଣୀରେ ଅତିରଞ୍ଜିତ କରିଛନ୍ତି ବୋଲି ନିଜେ ଶ୍ରୀ ମଧୁସୂଦନ ମହାପାତ୍ର ନିଜ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ।

ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କର 'ଗୀତିକବି ଦୀନକୃଷ୍ଣ' ଶୀର୍ଷକ ଏକ ପ୍ରବନ୍ଧରେ 'ସ୍ତ୍ରୀ ପୁରୁଷ ଲକ୍ଷଣ ଗ୍ରନ୍ଥ' ଆଲୋଚନା କରିବା ପ୍ରସଙ୍ଗରେ ଡଃ ମହାନ୍ତି ଲେଖିଛନ୍ତି - "ଏହି କ୍ଷୁଦ୍ର ରଚନାଟିରୁ କବିଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ମଧ୍ୟ କେତେକ ବିଷୟ

ଜଣା ଯାଇଥାଏ ତାହା ସମ୍ଭବତଃ ଯଥାର୍ଥ । ଗୋଟିଏ ପଦରେ କବି ଲେଖିଛନ୍ତି -

ପାଦପାଣି ମୋର ନାହିଁ ନା ଦେଖା । ଜନ୍ମରୁ ମୁରୁଖ ପଶୁରେ ଲେଖା ।

ବିଷୟାରମ୍ଭେ ତ ହୋଇଲି ଦୁଃଖୀ । ସୁଜନ ସଙ୍ଗ ହିଁ ନାହିଁ ମୁଁ ଦେଖି ।

(୧୬ଶ, ୧୭ଶ ପାଦ)

କୁଷ୍ଠରୋଗାକ୍ରାନ୍ତ ହେବା ଫଳରେ କବିଙ୍କ ହାତ ଓ ପାଦର ଆଙ୍ଗୁଠି ବିକୃତ ଛିନ୍ନ ହୋଇ ଯାଇଥିବା ପ୍ରସଙ୍ଗ ହୁଏତ ଏଠାରେ ସୂଚିତ ।''

ଡଃ ମହାନ୍ତି ଉପରୋକ୍ତ ପଦକୁ ଯେଉଁଭଳି ଭାବରେ ଅର୍ଥ କରିଛନ୍ତି ତାହା ହୁଏତ ଗ୍ରହଣୀୟ ନୁହେଁ । ତାହାର ଅର୍ଥ ହୁଏତ ଏହିପରି ହେବ "ମୁଁ ଚିରଦିନ ଭକ୍ତ ଭାବରେ ଜଗନ୍ନାଥଙ୍କ ପାଦ ପଦ୍ମରେ ମନୋନିବେଶ କରି ରହିବି ବୋଲି ଗୃହତ୍ୟାଗ କରିଥିଲି । ଯେଉଁଦିନ ଠାରୁ ବିଷୟ ଭୋଗରେ (ବୈବାହିକ ବନ୍ଧନରେ) ଆସକ୍ତ ହୋଇ ପଡ଼ିଲି ସେହିଦିନ ଠାରୁ ଦୁଃଖରେ ଘାଣ୍ଟି ହେଉଛି । ସେହି ଜଗନ୍ନାଥଙ୍କର ପାଦପାଣି ସନ୍ଦର୍ଶନ କରିବାର ସୌଭାଗ୍ୟ ମୋତେ ମିଳିନାହିଁ ।'' ମୁଁ ଜନ୍ମରୁ ମୂର୍ଖ ଓ ପଶୁ ସମାନ । ସୁଜନଙ୍କ ସଙ୍ଗତରେ ମିଶିବାର ସୌଭାଗ୍ୟ ମୋତେ ମିଳିନାହିଁ । ଏହି ଅର୍ଥରୁ ତାଙ୍କୁ କୁଷ୍ଠରୋଗ ହୋଇଥିବାର ପ୍ରମାଣ ଆଦୌ ଉପଲବ୍ଧ ହୋଇପାରୁ ନାହିଁ ।

କୃଷ୍ଣଦାସଙ୍କୁ କୁଷ୍ଠରୋଗ ହୋଇଥିବା କଥା ଯେ ଭ୍ରମାତ୍ମକ ଏହା ବୋଧ ହୁଏ ପାଠକମାନଙ୍କର ହୃଦ୍‌ବୋଧ ହୋଇସାରିଥିବ । ଏହି ଯୁକ୍ତିକୁ ଅଧିକ ସତ୍ୟନିଷ୍ଠ କରିବା ପାଇଁ ନିମ୍ନରେ ଆଉ କେତେକ ଯୁକ୍ତି ମଧ ଉପସ୍ଥାପନ କରାଯାଇଛି ।

(୧) କୃଷ୍ଣ ଦାସଙ୍କ କୁଷ୍ଠରୋଗ ହୋଇଥିବା କିମ୍ବଦନ୍ତୀଟି ଅଳୀକ ଓ ଅର୍ବାଚୀନ । ରାମଦାସ ଦାଢ୍ୟତାଭକ୍ତି ରଚନା କରିବା ପର୍ଯ୍ୟନ୍ତ ସେମିତି କୌଣସି କିମ୍ବଦନ୍ତୀ ସୃଷ୍ଟି ହୋଇ ନ ଥିଲା । ଥିଲେ ରାମଦାସ ନିଶ୍ଚିତ ଭାବରେ ସେ ବିଷୟରେ ଉଲ୍ଲେଖ କରି ଥାଆନ୍ତେ ।

(୨) ତାଳପତ୍ର ପୋଥିରେ ଲେଖନୀ ସାହାଯ୍ୟରେ କିଛି ରଚନା କରିବା ଏକ ସହଜସାଧ ବ୍ୟାପାର ନୁହେଁ । ସେଇଥିପାଇଁ ରଚନାକାରମାନେ ପୋଥି ଶେଷରେ ଲେଖିଥାଆନ୍ତି -

ଭଗ୍ନପୃଷ୍ଠି କଟୀଗ୍ରୀବ ତୁଲ୍ୟ ଦୃଷ୍ଟି ଅଧୋମୁଖଂ

ଦୁଃଖେନ ଲିଖିତଂ ଗ୍ରନ୍ଥଂ ପୁତ୍ରବତ୍ ପରିପାଳୟେତ୍ ।

କୃଷ୍ଣଦାସ ଯେତେ ସଂଖ୍ୟକ ଗ୍ରନ୍ଥ ରଚନା କରିଛନ୍ତି, ତାହା କୌଣସି କୁଷ୍ଠରୋଗାକ୍ରାନ୍ତ

ବ୍ୟକ୍ତି ପକ୍ଷରେ ଏକାନ୍ତ ଅସମ୍ଭବ । ଦୀନକୃଷ୍ଣ ସମସ୍ତ ଗ୍ରନ୍ଥ ନିଜେ ହିଁ ରଚନା କରିଛନ୍ତି । ଯଦି ଆଉ କାହା ମାଧ୍ୟମରେ ରଚନା କରିଥାଆନ୍ତେ ସ୍ୱାର୍ଥପର ନ ହୋଇ ସେ ନିଶ୍ଚୟ ଲେଖନକାରୀର ନାମ ଗ୍ରନ୍ଥରେ ଉଲ୍ଲେଖ କରିଥାଆନ୍ତେ । ପୁଣି ରସ ବିନୋଦରେ କବି ଲେଖିଛନ୍ତି -

ଅକ୍ଷର ଗଣିବ ହସ୍ତରେ । ତେବେ ସେ ଲେଖିବ ପତରେ ।

ଏହି ପଦରୁ ମଧ୍ୟସେ ନିଜେ ଗ୍ରନ୍ଥ ଲେଖନ କରୁଥିବାର ପ୍ରମାଣ ମିଳେ ।

(୩) ଜଣେ କୁଷ୍ଠରୋଗାକ୍ରାନ୍ତ ବ୍ୟକ୍ତି ଏତେ ବଡ଼ ପାଣ୍ଡିତ୍ୟର ଅଧିକାରୀ ହୋଇପାରିବ ନାହିଁ । ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରକାଶିତ ଭକ୍ତ କବି ଦୀନକୃଷ୍ଣ ଗ୍ରନ୍ଥରେ ଶ୍ରୀ ପଙ୍କଜ ସାହୁ ଭକ୍ତ କବି ଦୀନକୃଷ୍ଣଙ୍କ ଜୀବନ ଆଲେଖ୍ୟ ପ୍ରବନ୍ଧରେ କୃଷ୍ଣଦାସଙ୍କ ପାଣ୍ଡିତ୍ୟ ସମ୍ପର୍କରେ ଯାହା କହିଛନ୍ତି ଦ୍ୱିରୁକ୍ତି ନ କରି ମୁଁ ତାହାକୁ ଅବିକଳ ଏଠାରେ ଉଲ୍ଲେଖ କରି ଦେଉଛି । ସେ ଲେଖିଛନ୍ତି - "ଉତ୍କଟ ଦାରିଦ୍ର୍ୟ ମଧ୍ୟରେ ଜୀବନ ଯାପନ କରୁଥିଲେ ମଧ୍ୟ ଦୀନକୃଷ୍ଣ ଦାସ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଅନେକ ଶାସ୍ତ୍ର ଅଧ୍ୟୟନ କରିଥିଲେ । ସେ କାମ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ଆୟୁର୍ବେଦ ଶାସ୍ତ୍ର,ସାମୁଦ୍ରିକ ଶାସ୍ତ୍ର, ଶକୁନ ଶାସ୍ତ୍ର ଇତ୍ୟାଦି ଅଧ୍ୟୟନ ପୂର୍ବକ ପ୍ରଭୁତ ଜ୍ଞାନ ଲାଭ କରିଥିଲେ । ଅନେକ ବୈଷ୍ଣବ ଧର୍ମଗ୍ରନ୍ଥ ସହିତ ଷଟ୍‌କାବ୍ୟ, କାଳିଦାସ ବିରଚିତ ଋତୁ ସଂହାର, ଶୃଙ୍ଗାର ତିଳକ, ଅଭିଜ୍ଞାନଶାକୁନ୍ତଳମ୍ ଓ ଉତ୍ତର ରାମ ଚରିତ ପ୍ରଭୃତି ଅଧ୍ୟୟନ ପୂର୍ବକ କବି ତାଙ୍କର ଜୀବନର ପୂର୍ବାହ୍ଣରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । ସେ ଜଣେ ସଙ୍ଗୀତଜ୍ଞ ତଥା ରସବେତ୍ତା ମଧ୍ୟ ଥିଲେ । ତତ୍‌କାଳୀନ କବିଗଣ କାବ୍ୟରଚନା କରିବା ପୂର୍ବରୁ ସଙ୍ଗୀତଶାସ୍ତ୍ର ଓ ଛନ୍ଦଶାସ୍ତ୍ର ଅଧ୍ୟୟନ କରୁଥିଲେ । ମନର ଭାବକୁ ଭଲ ଭାବେ ପ୍ରକାଶ କରିବା ନିମିତ୍ତ ଛନ୍ଦ ଯୋଜନା ସର୍ବାଦୌ ଆବଶ୍ୟକ । ତାହା ନ ଜାଣିଲେ କବି ତାର ହୃଦ୍‌ଗତ ଭାବକୁ ଯଥାର୍ଥ ରୂପ ପ୍ରଦାନ କରିପାରିବ ନାହିଁ । ତେଣୁ ଛନ୍ଦ ଓ ସଙ୍ଗୀତ ଶାସ୍ତ୍ରରେ କବି ଦୀନକୃଷ୍ଣଙ୍କର ଗଭୀର ଅନୁପ୍ରବେଶ ମଧ୍ୟ ଥିଲା । ଅଧିକ ଶାସ୍ତ୍ରଲବ୍ଧ ଜ୍ଞାନକୁ ପୁଞ୍ଜି କରି ଦୀନକୃଷ୍ଣ ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ କରିଥିଲେ । (ପୃ - ୧୮)

(୪) କୃଷ୍ଣଦାସ ତାଙ୍କର ବୈଦ୍ୟ ଶାସ୍ତ୍ରକୁ ରଚନା କରିବା ପାଇଁ ଚରକ, ଶୁଶ୍ରୁତ, ବାଗ୍‌ଭଟ୍ଟ ଆଦି ଆୟୁର୍ବେଦ ଶାସ୍ତ୍ରବିତ୍ ମାନଙ୍କର ଶାସ୍ତ୍ରକୁ ଅଧ୍ୟୟନ କରିଥିଲେ । ମାଧବ ନିଦାନ

ଅଧ୍ୟୟନ କରି ସେ ମାଧବକର ଗୀତା ରଚନା କରିଥିଲେ । ବୈଦ୍ୟଶାସ୍ତ୍ରରେ ରୋଗୀର ପରୀକ୍ଷା ଏବଂ ବହୁ ରୋଗର ଔଷଧ ପ୍ରଦାନ କରାଯାଇଥିଲେ ମଧ କୁଷ୍ଠରୋଗ ସମ୍ପର୍କରେ କିଛି ଉଲ୍ଲିଖିତ ହୋଇନାହିଁ । ବୈଦ୍ୟଶାସ୍ତ୍ରରେ ସେ ବୈଦ୍ୟମାନଙ୍କୁ ନାରାୟଣଙ୍କ ସହିତ ତୁଳନା କରିଛନ୍ତି । ଏହିସବୁ କାରଣରୁ ତଥା ଜଣେ ଉତ୍ତମ ବୈଦ୍ୟ ହୋଇଥିବାରୁ ତାଙ୍କୁ କୁଷ୍ଠରୋଗଗ୍ରସ୍ତ ବୋଲି କହିବା କେତେଦୂର ସମୀଚୀନ ହେବ ତାହା ପାଠକେ ବିଚାର କରିବେ ।

ଏହି ପ୍ରସଙ୍ଗକୁ ଏଠାରେ ଶେଷ କରିବା ପୂର୍ବରୁ ରସକଲ୍ଲୋଳର ମୁଖବନ୍ଧରେ ଆର୍ତ୍ତ ବଲ୍ଲଭ ମହାନ୍ତି ପ୍ରଦାନ କରିଥିବା ଏକ ବକ୍ତବ୍ୟକୁ ଏଠାରେ ଉଦ୍ଧାର କରୁଛି । ସେ ଲେଖିଛନ୍ତି - ଅନେକ ସ୍ଥଳରେ ପରିଦୃଷ୍ଟ ହୁଏ, କେତେକ ଲୋକ ଅଦୂରଦର୍ଶୀ ମୁଷ୍ଟିମେୟ ସମାଲୋଚକଙ୍କ ମତ ଲୋକମୁଖରେ ଶ୍ରବଣ କରି ଅନ୍ଧ ପରମ୍ପରା ନ୍ୟାୟରେ ତାହାକୁ ସ୍ୱମତ ବୋଲି ଖ୍ୟାପନ କରନ୍ତି । କାବ୍ୟପାଠ କରିବା ତ ଦୂରର କଥା, କାବ୍ୟ ପର୍ଯ୍ୟନ୍ତ ଦୃଷ୍ଟିଗୋଚରରେ ନ ଆଣି କେବଳ କବିଙ୍କ ଦୋଷମାନ ଲୋକ ସମକ୍ଷରେ ପ୍ରକାଶ କରନ୍ତି । ଏ ବିଷୟ ଆଧୁନିକ ଶିକ୍ଷିତ ସମାଜରେ ବହୁଳ ଭାବରେ ପରିଲକ୍ଷିତ ହୁଏ । କେତେକ ବ୍ୟକ୍ତି କତିପୟ ଖ୍ୟାତନାମା ଲୋକଙ୍କ ତୁଷ୍ଟି ବିଧାନ କରିବା ଉଦ୍ଦେଶ୍ୟରେ ତଥା ନିଜର ସ୍ୱାର୍ଥସିଦ୍ଧିର ଅଭିପ୍ରାୟରେ କେବଳ ମତ ଅଭିବ୍ୟକ୍ତ କରିଥାନ୍ତି ।"

ଏହି ବକ୍ତବ୍ୟକୁ ଏଠାରେ ଉଦ୍ଧାର କରିବାର ଉଦ୍ଦେଶ୍ୟ କୌଣସି ଆଲୋଚକଙ୍କ ପ୍ରତି ଆକ୍ଷେପ କରିବା ନୁହେଁ । ବରଂ ପାଠକ ଏବଂ ପରବର୍ତ୍ତୀ ଆଲୋଚକମାନଙ୍କୁ ମୋର ଅନୁରୋଧ ସେମାନେ କୃଷ୍ଣଦାସଙ୍କୁ କୁଷ୍ଠରୋଗୀ ବୋଲି ନ କହି ତାଙ୍କର ମହାନ୍ ଆତ୍ମାକୁ ଅଶାନ୍ତି ପ୍ରଦାନ କରନ୍ତୁ ନାହିଁ ।

ବୈଦ୍ୟଶାସ୍ତ୍ରକୁ ଗୀତ ରୂପ ଦେବାରେ କବି କୃଷ୍ଣଦାସଙ୍କର ଦୁଇଗୋଟି ଉଦ୍ଦେଶ୍ୟ ଥିଲା । ପ୍ରଥମ ଉଦ୍ଦେଶ୍ୟ ହେଲା ପୂର୍ବରୁ କୌଣସି କବି ଏହି ଶାସ୍ତ୍ରକୁ ପଦ୍ୟରୂପ ପ୍ରଦାନ କରି ନ ଥିବା ହେତୁ ଏହାକୁ ପଦ୍ୟାକାରରେ ରଚନା କରିବା ଏବଂ ଦ୍ୱିତୀୟ ଉଦ୍ଦେଶ୍ୟ ହେଲା ଜଟିଳତମ ବୈଦ୍ୟଶାସ୍ତ୍ରକୁ ସହଜ କରି ଲୋକମାନଙ୍କ ନିକଟରେ ପହଞ୍ଚାଇବା । ଅନ୍ୟ ଗ୍ରନ୍ଥଗୁଡ଼ିକ ପରି ବୈଦ୍ୟଶାସ୍ତ୍ରର ଶେଷଭାଗରେ କବି ପୁସ୍ତକ ସମ୍ପର୍କିତ କେତେ ତଥ୍ୟର ଅବତାରଣା କରିଛନ୍ତି । ଲେଖିଛନ୍ତି -

ସଂସାରେ ଯେତେ କବିମାନେ ଥିଲେ । ବଦ୍ୟ ସାହାସ୍ର କେହି ନ କହିଲେ

ପ୍ରାଣୀମାନଙ୍କ ଉପକାର ଯାହା । କେହୁଣି କବି ତ ନ କଲେ ଏହା

ପ୍ରାଣୀମାନଙ୍କ ଉପକାର କରିବାକୁ ସେ ତାଙ୍କର ଅନନ୍ୟ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ସେ ବାରମ୍ବାର ପ୍ରାଣୀମାନଙ୍କର ଉପକାର କରିବା କଥାକୁ ଗ୍ରନ୍ଥରେ ଦୋହରାଇ ଅଛନ୍ତି । ଗ୍ରନ୍ଥ ଶେଷରେ ବି କହିଛନ୍ତି -

ପ୍ରାଣୀମାନଙ୍କ ଉପକାର ପାଇଁ । ବୈଦ୍ୟ ସାହାସ୍ରଏବେ ଦେଲି କହି ।

ପ୍ରାଣୀମାନଙ୍କର ଉପକାର କରିବା ପାଇଁ କୃଷ୍ଣଦାସ ସମଗ୍ର ବୈଦ୍ୟଶାସ୍ତ୍ରକୁ ଅଧ୍ୟୟନ କରି ତାହାର ସାର ଅଂଶକୁ ପଦ୍ୟାକାରରେ ରଚନା କରିଛନ୍ତି । ଏହି ବୈଦ୍ୟଶାସ୍ତ୍ରକୁ କବି ଚାରିଗୋଟି ଭାଗରେ ବିଭକ୍ତ କରିଛନ୍ତି । ସେହି ଚାରିଗୋଟି ଭାଗର ଉଲ୍ଲେଖ ମଧ ଶେଷ ପର୍ଯ୍ୟାୟରେ ଉଲ୍ଲିଖିତ ହୋଇଛି ।

ପ୍ରଥମେ ଦେଖିବ ନାଟିକା ଯାଇ । ଦ୍ୱିତୀୟେ ମୁତରେ ତଇଳ ଦେଇ

ତୃତୀଏ ବିହିବ ପାଞ୍ଚ ନ ଶିସ । ଚତୁର୍ଥେ ମକ୍କୁକୁ ଦେବାକ ରସ ।

ଅର୍ଥାତ୍ ଏହି ଶାସ୍ତ୍ରରେ ପ୍ରଥମେ ନାଡ଼ି ପରୀକ୍ଷା ସମ୍ପର୍କରେ ଉଲ୍ଲେଖ କରାଯାଇଛି । ଦ୍ୱିତୀୟରେ ମୂତ୍ର ପରୀକ୍ଷା ଅର୍ଥରେ ରୋଗୀର ମୂତ୍ର ସଂଗ୍ରହ କରି ସେଥରେ ତୈଳ ପକାଇ ତୈଳର ଗତି ଅନୁସାରେ ରୋଗୀର ପରୀକ୍ଷା, ତୃତୀୟ ଓ ଚତୁର୍ଥରେ ବିଭିନ୍ନ ପାଞ୍ଚନ ଓ ରସ କିପରି ସୃଷ୍ଟି କରାଯିବ ବିସ୍ତୃତ ଭାବରେ ତାହାର ବର୍ଣ୍ଣନା କରାଯାଇଛି । ଆୟୁର୍ବେଦ ଶାସ୍ତ୍ରରେ ଅଛି -

ଦର୍ଶନ ସ୍ପର୍ଶନପ୍ରଶ୍ନୈସ୍ତଂ ପରୀକ୍ଷେତ ରୋଗିଣମ୍

ଆୟୁରାଦି ଦୃଶାସ୍ପର୍ଶାଚ୍ଛୀତାଦି ପ୍ରଶ୍ନତଃ ପରମ୍ । (ବାଗ୍‌ଭଟ୍ଟ)

ଅର୍ଥାତ୍ ଦର୍ଶନ, ସ୍ପର୍ଶନ ଓ ପ୍ରଶ୍ନ ଏହି ତିନି ପ୍ରକାରରେ ରୋଗୀକୁ ପରୀକ୍ଷା କରାଯାଏ । ନାଡ଼ି ପରୀକ୍ଷାକୁ ସ୍ପର୍ଶନ ଓ ମୂତ୍ର ପରୀକ୍ଷାକୁ ଦର୍ଶନ ଭିତରେ ଗ୍ରହଣ କରାଯାଇଛି । କବି କୃଷ୍ଣଦାସ ସ୍ପର୍ଶନରୁ ନାଡ଼ି ପରୀକ୍ଷାକୁ ଦର୍ଶନରୁ ମୂତ୍ର ପରୀକ୍ଷାକୁ ବିଷୟବସ୍ତୁ ଭାବରେ ଗ୍ରହଣ କରିଛନ୍ତି ।

କେମିତି ନାଡ଼ି ପରୀକ୍ଷା କରାଯିବ ତାହାର ଉତ୍ତରରେ ଆୟୁର୍ବେଦ ଶାସ୍ତ୍ରରେ ଲେଖାଯାଇଛି -

ନାଡ଼ିମଙ୍ଗୁଷ୍ଠମୂଳାଧଃ ସ୍ପୃଶେଦକ୍ଷିଣାଗ କରେ
ଜ୍ଞାନାର୍ଥଂ ରୋଗିଣୋ ବୈଦ୍ୟୋ ନିଜ ଦକ୍ଷିଣ ପାଣିନା ।
ସ୍ତ୍ରୀଣାଂ ଭିଷଗ୍ୱାମ ହସ୍ତେ ବାମ ପାଦେ ଚ ଯତ୍ନତଃ
ଶାସ୍ତ୍ରେଣ ସମ୍ପ୍ରଦାୟେନ ତଥା ସ୍ୱାନୁଭବେଚ । (ବାଗ୍‌ଭଟ୍ଟ)

ଏହାର ଅର୍ଥ ହେଲା ଚିକିତ୍ସକ ରୋଗ ଜାଣିବା ନିମିତ୍ତ ନିଜର ଦକ୍ଷିଣ ହସ୍ତଦ୍ୱାରା ପୁରୁଷ ଲୋକର ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ମୂଳର ଠିକ୍ ନିମ୍ନ ଭାଗରେ ନାଡ଼ିକୁ ସ୍ପର୍ଶ କରିବେ । ସ୍ତ୍ରୀ ଲୋକମାନଙ୍କର ବାମ ହସ୍ତରେ ଓ ବାମ ପାଦରେ ନାଡ଼ି ପରୀକ୍ଷା କରାଯାଏ । କୃଷ୍ଣ ଦାସ ମଧ୍ୟ ସେହିପରି ବୈଦ୍ୟଶାସ୍ତ୍ରରେ ଉଲ୍ଲେଖ କରିଛନ୍ତି -

ଯେବଣ ପ୍ରକାରେ ନାଟିକା ଧରି । ଦକ୍ଷିଣେ ପୁରୁଷ ବାମେଣ ନାରୀ ।

ନାଡ଼ିର ପରୀକ୍ଷାରୁ ବାତ ପିତ୍ତ ଓ ଆମ୍ଳର ଲକ୍ଷଣ ଜଣା ଯାଇଥାଏ ବୋଲି ବୈଦ୍ୟଶାସ୍ତ୍ରରେ କୃଷ୍ଣଦାସ ଉଲ୍ଲେଖ କରିଛନ୍ତି । ଏହି ନାଡ଼ିରୁ ସନ୍ନିପାତର ଲକ୍ଷଣ ମଧ୍ୟ ବୁଝି ହୋଇଥାଏ ।ଶ୍ଳେଷ୍ମାଯୁକ୍ତ ହୋଇ ବାତ ଶ୍ଳେଷ୍ମା, ପିତ୍ତ ଶ୍ଳେଷ୍ମା ଓ ବାତ ପିତ୍ତ ଶ୍ଳେଷ୍ମା ମଧ୍ୟ ନାଡ଼ି ପରୀକ୍ଷାରୁ ପ୍ରକାଶିତ ହୋଇଥାଏ । କବି ବୈଦ୍ୟମାନଙ୍କୁ ସହଜବୋଧ କରାଇବା ପାଇଁ ସୁନ୍ଦର ଭାବର ଉପମାମାନ ପ୍ରୟୋଗ କରି ବୈଦ୍ୟଶାସ୍ତ୍ରକୁ ରସାଳ କରାଇଛନ୍ତି । ସନ୍ନିପାତ ଲକ୍ଷଣରେ କବି କହିଛନ୍ତି -

ସନ୍ନିପାତ ନାଡ଼ି ଦେଉଛି କହି । ବେଙ୍ଗ କଣ୍ଠ ପ୍ରାୟେ ହଲୁଣ ଥାଇ ।
ହଂସ ଯେହ୍ନେ ଜଳ ପହଁରିଯାଏ । ନୋହିଲେ ଚାଲଇ ବିଚିତ୍ର ପ୍ରାୟେ ।
ଘରଚଟିଆ ଚଢ଼େଇ ଯେମନ୍ତ । ଛଟଛଟ ହୋଇ ଡେଇଁ ତେମନ୍ତ ।
ତିଅଁଇ ଗଡ଼ଇ କ୍ଷଣକେ ପଡ଼ି । ସନ୍ନିପାତ ବୋଲି ଏମନ୍ତ ନାଡ଼ି ।

କୃଷ୍ଣଦାସ ସବୁ ନାଡ଼ିର ବର୍ଣ୍ଣନା ଏହିପରି ରମଣୀୟ ଉପମା ମାଧ୍ୟମରେ ପ୍ରଦାନ କରିଛନ୍ତି । କେତେବେଳେ ତାହା କୁଆ ଆଖି ପରି ମିଟିମିଟି ଚାହିଁଥାଏ ତ କେତେବେଳେ କୁକୁଡ଼ାର କଣ୍ଠ ପରି ଦକଦକ ହେଉଥାଏ । କେତେବେଳେ କଙ୍କଡ଼ା ପରି ମୁଣ୍ଡକୁ ହଲାଉଥାଏ ତ କେତେବେଳେ ଏଣ୍ଡୁଅ ପରି ମୁଣ୍ଡକୁ ଛଟଛଟ କରୁଥାଏ ।

କବି ମୂତ୍ର ପରୀକ୍ଷା ପ୍ରସଙ୍ଗରେ ମଧ୍ୟ ଏହିପରି ଉପମା ପ୍ରୟୋଗକୁ ବ୍ୟବହାର କରିଛନ୍ତି । ଯେମିତି -

ଯେବଣ ମୂତ୍ରରେ ତୈଳ ପ୍ରବେଶ । ତାହୁଁ ତାହୁଁ ଯେବେ ହୋଇ ଅଦୃଶ୍ୟ
ନୋହିଲେ ଆର୍ଦ୍ରାବଳୀ ପ୍ରାୟେ ଯିବ । ଆଦିତ୍ୟ ମଣ୍ଡଳ ପ୍ରାୟେ ଦିଶିବ ।
ନୀଳବର୍ଣ୍ଣ ପ୍ରାୟେ ବର୍ଣ୍ଣ ସ୍ୱଭାବେ । ଏତେ ଅଲକ୍ଷଣ ଦିଶିବ ଯେବେ
ସେ ମଳୁ କେବେହେଁ ନୁହଇ ସାଧ । ବିଚାରି ବୁଝହେ ପଣ୍ଡିତ ବୈଦ୍ୟ ।

ଆୟୁର୍ବେଦ ଅନୁସାରେ ମୂତ୍ର ପରୀକ୍ଷାର ପ୍ରାରମ୍ଭିକ କାର୍ଯ୍ୟ ଏହିପରି -

ପାଶ୍ଚାତ୍ୟ ରଜନୀବାମେ ଘଟିକାନାଂ ଚତୁଷ୍ଟୟେ
ଉତ୍‌ଥାପ୍ୟ ରୋଗୀଣଂ ବୈଦ୍ୟୋ ମୂତ୍ରୋତ୍‌ସର୍ଗଞ୍ଚ କାରୟେତ୍ ।
ଆଦ୍ୟଧାରାଞ୍ଚ ସନ୍ତଜ୍ୟ ମଧ୍ୟଧାରା ସମୁଦ୍ଭବମ୍
ଶୁଭେ କାଚମୟେ ପାତ୍ରେ କୃତଂ ମୂତ୍ରଂ ପରୀକ୍ଷୟେତ୍ ।
ଭାସ୍କରୋଦୟବେଳାୟାଂ ପ୍ରକାଶ ସ୍ଥାନକେ ଧୃତମ୍
ଲୋଳୟିତ୍ୱା ପୁନଃ ସମ୍ୟକ୍ ତତୋ ମୂତ୍ରଂ ପରୀକ୍ଷୟେତ୍ ।
ତୃଣେନାଦାୟ ତୈଳସ୍ୟ ବିନ୍ଦୁଂ ମୂତ୍ରେ ବିନିକ୍ଷିପେତ୍
ଜାୟନ୍ତେ ବୁଦ୍‌ବୁଦା ଯତ୍ର ବିକାରଃ ସୋଽସ୍ତି ପିତ୍ତଜଃ ।(ବାଗ୍‌ଭଟ୍ଟ)

ଅର୍ଥ, ବୈଦ୍ୟ ଚାରିଦଣ୍ଡ ରାତ୍ରି ଅବଶିଷ୍ଟ ଥିବା ସମୟରେ ରୋଗୀକୁ ଉଠାଇ ମୂତ୍ରତ୍ୟାଗ କରାଇବେ । ପ୍ରଥମ ମୂତ୍ରଧାରା ଗ୍ରହଣ କରିବେ ନାହିଁ । ମଧ୍ୟ ସମୟରେ ଯେଉଁ ମୂତ୍ର ନିର୍ଗତ ହେବ ତାହାକୁ ନିର୍ମଳ କାଚପାତ୍ରରେ ରଖି ପରୀକ୍ଷା କରିବେ ।ସୂର୍ଯ୍ୟ ଉଦୟ ହୋଇ ଯାଇଥିଲେ ପ୍ରକାଶ୍ୟ ସ୍ଥାନରେ ମୂତ ଗ୍ରହଣ କରି ତାହାକୁ ପୁନଃ ପୁନଃ ହଲାଇ ପରୀକ୍ଷା କରିବେ । ତୃଣ ମାଧ୍ୟମରେ ଏକ ବିନ୍ଦୁ ତୈଳ ଆଣି ମୂତ୍ରରେ ପକାଇବେ । ଯଦି ଏଥିରେ ବୁଦ୍ ବୁଦ ସୃଷ୍ଟି ହୁଏ ତେବେ ରୋଗୀର ରୋଗ ପିତ୍ତ ଜନିତ ବୋଲି ଜଣାଯିବ ।

ଦୀନକୃଷ୍ଣ ଏହି ମର୍ମରେ ଗୀତ ରଚନା କଲେ ମଧ୍ୟ ସେଥିରେ ସାମାନ୍ୟ ପରିବର୍ତ୍ତନ କରା ହୋଇଛି ।କବି କହିଛନ୍ତି-

ମୂତ ଧରିବାର ଏମନ୍ତ ବିଧି । ତାହା କହିଦେବା ଶୁଣ ସୁବୁଦ୍ଧି
ସୁବୁଦ୍ଧି ସାଧୁ ବୈଦ୍ୟମାନେ ଶୁଣ । ନାନା ବର୍ଣ୍ଣରେ ପରିସ୍ରାବଗୁଣ
ପ୍ରଭାତେ ମୂତ୍ର ଯେ କଂସାରେ ଧରୁ । ନୋହିଲେ ମାଟି ପିହାଣରେ କରୁ
ତିନିଦଣ୍ଡ ଯାଏ ଖରାରେ ଥିବ । ଆଗପଛ ମୂତ୍ର ଲୋଡ଼ିଣ ନେବ

କୁଶ ଅଗ୍ରେ ପକାଇବ ତଇଳ । ନୋହିଲେ ତିରଣ ଅଗ୍ରତେ ଭଲ ।

ତିନି ମୁହୂର୍ତ୍ତ ଅନାଇବ ରହି । ଯେଉଁଦିଗେ ଯିବ ଯେମନ୍ତ ହୋଇ

ଯେଉଁ ଦିଗକୁ ସେ ଚାଲିବ ଖର । ଦୃଢ଼ କରି ତାକୁ ହୃଦରେ ଧର ।

ନାଡି ପରିକ୍ଷା ଓ ମୂତ୍ର ପରିକ୍ଷା ପରେ ବିଭିନ୍ନ ରୋଗ ପାଇଁ ପାଚନ ଓ ରସ ସମ୍ପର୍କରେ କବି ଆଲୋଚନା କରିଛନ୍ତି । କେଉଁ ଦୁର୍ମୂଲ୍ୟ ପୋଥି ବା କେଉଁ ମହାପୁରୁଷଙ୍କର ସଂସ୍କୃତ ଆୟୁର୍ବେଦ ଗ୍ରନ୍ଥରୁ କବି ତାହାକୁ ସଂଗ୍ରହ କରିଛନ୍ତି ତାହାକୁ ଖୋଜି ପାଇବା ଆମଭଳି ସାଧାରଣ ବ୍ୟକ୍ତିଙ୍କ ପକ୍ଷରେ ଅତ୍ୟନ୍ତ କଷ୍ଟକର । କୃଷ୍ଣଦାସ ପ୍ରଥମେ ଚନ୍ଦନାଦି ପାଚନ ସଂପର୍କରେ ଉଲ୍ଲେଖ କରି କହିଛନ୍ତି-

ମୂତ ପରୀକ୍ଷା ଏହିଠାରେ ଗଲା । ପାଞ୍ଚନ ମହିମା କହିବା ଭଲା

ଗର୍ଭିଣୀ ସ୍ତ୍ରୀରୀମାନଙ୍କର ଜ୍ୱର । ତହିଁକି ଏମନ୍ତ ଔଷଧ କର

ଦିବ୍ୟ ବଚନ ଏ ଅତିଉପମ । ଏହାକୁ ବୋଲି ଚନ୍ଦନାଧି ନାମ

ମୁଥା ମାଢ଼ ହୋଇବ ଯେତେ । ରକତ ଚନ୍ଦନ କରିବା ତେତେ

ପାପଡା ମାଢ଼ ତହିରେ ଭରି । ପାଟେଳ ମାଢ଼ ଯତନ କରି

କଟୁକୀ ମାଢ଼ ଯତନ କରି । ପାଣି ଅଷ୍ଟହି ମାଣିକାରେ ଭରି

ହାଣ୍ଡିରେ ଭରି ସିଝାଇବ ନେଇ । ପାଣି ରହିବ ମାଣିକାଏ ତହିଁ

ମହୁ ପରୀକ୍ଷ ଯେ ଏଥକୁ କର । ଗର୍ଭିଣୀ ସ୍ତିରୀର ଛାଡିବ ଜ୍ୱର ।

ଚନ୍ଦନାଦି ସଂପର୍କରେ ବାଗ୍‌ଭଟ୍ଟ କହିଛନ୍ତି ଯେ-

ଚନ୍ଦନଂ ପଦ୍ମକଞ୍ଚୈବ ତଥା କଟୁକରୋହିଣୀ

ପୃଥକ୍‌ପର୍ଣ୍ଣିଂ ସମଂସିଦ୍ଧ ମୁଷିତଂ ଶୀତଳଂ ଜଳମ୍

ପିତ୍ତୋତ୍ତରେ ନୃଣାମେତଦ୍ ସନ୍ନିପାତେ ଚିକିତ୍ସିତମ୍ ।

ଅର୍ଥାତ୍, ରକ୍ତଚନ୍ଦନ, ପଦ୍ମକାଷ୍ଠ, କଟୁକୀ ଓ ରୋହିଣୀକୁ ସମପରିମାଣରେ ସିଦ୍ଧ କରି ପରଦିନ ପ୍ରାତଃ କାଳରେ ସେହି ଶୀତଳ ଜଳକୁ ପାନ କରିଲେ ପିତ୍ତୋତ୍ତର ସନ୍ନିପାତ ରୋଗ ଶାନ୍ତ ହେବ ।

ପ୍ରତାପ ମାର୍ତ୍ତଣ୍ଡ ରସ ସମ୍ପର୍କରେ ବାଗ୍‌ଭଟ୍ଟ ଲେଖିଛନ୍ତି ଯେ-

ବିଷ ହିଙ୍ଗୁଳ ଜୈପାଳ-ଟଙ୍କଣଂ କ୍ରମବର୍ଦ୍ଧିତମ୍

ରସଃ ପ୍ରତାପ ମାର୍ତ୍ତଣ୍ଡଃ ସଦ୍ୟୋଜ୍ୱର ବିନାଶନଃ ।

ଅର୍ଥ ବିଷ୧ଭାଗ, ହିଙ୍ଗୁଳ୨ଭାଗ, ଜୟପାଳ ୩ ଭାଗ, ଟାଙ୍ଗଣା ୪ ଭାଗକୁ ଏକତ୍ର ଜଳରେ ମର୍ଦ୍ଦନ କରି ରସ ପ୍ରସ୍ତୁତ କରି ସେବନ କଲେ ସଙ୍ଗେ ସଙ୍ଗେ ଜ୍ୱର ନିବାରିତ ହେବ ।

ସେହି ପ୍ରତାପ ମାର୍ତ୍ତଣ୍ଡ ରସ ସଂପର୍କରେ କବି କୃଷ୍ଣ ଦାସ ଲେଖିଯାଇଛନ୍ତି-

ପ୍ରତାପ ମାର୍ତ୍ତଣ୍ଡ ରସର ଗୁଣ । ସୁବୁଧ ସାଧୁ ବଦ୍ୟଜନେ ଶୁଣ
ଗରଳ ମାଢ଼େକ ଘେନିଣ ହେଜି । ମହୁରାଦି ମାଢ଼ ତହିରେ ବେଜି .
ଜେପାଳ ଛମାଢ଼ ଟାଙ୍ଗଣା ଚାରି । ହିଙ୍ଗୁଳ ଆଠ ମାଢ଼ ତହିଁ ଭରି
ଅଦାରସ କିଛୁ ମିଶାଇ ଦେବୁ । ଜମ୍ବିଳ ରସେ ମର୍ଦ୍ଦନ କରିବୁ
ଜମ୍ବିଳ ରସ ନ ପାଇବୁ ଯେବେ । ଶୁଣ୍ଠି ପାଣିଦେଇ ଖଲିବୁ ତେବେ
ଚଣାସମ କରି ବାନ୍ଧିବୁ ବଡି । ସିତଳାରେ ସବୁ ଥିବୁ ସଂଯାଡି
ଏଥିରୁ ମାତ୍ରା ଏ ଖାଇଲେ ବଡି । ନାନାଦି ବ୍ୟାଧିମାନ ଯାଇ ଛାଡି ।

କୃଷ୍ଣ ଦାସଙ୍କ ବୈଦ୍ୟ ଶାସ୍ତ୍ର ସଂସ୍କୃତ ଆୟୁର୍ବେଦ ଶାସ୍ତ୍ରର ଅନୁବାଦ ନୁହେଁ, ବରଂ ବୈଦ୍ୟଜନ ଓ ପାଠକଗଣଙ୍କୁ ମୁଗ୍ଧ କରିବା ପାଇଁ ବିଭିନ୍ନ ଭାବରେ ଏଥିରେ ଚେଷ୍ଟା କରାଯାଉଛି । ଲଳିତ ଶବ୍ଦଭାବରେ ଝାଙ୍କି ହୋଇଯାଇଛି ଏହି ବୈଦ୍ୟ ଶାସ୍ତ୍ର ରୂପକ ଅନନ୍ୟ ମହୀରୁହ । ଦୁଗ୍ଧରୁ ରାବିଡି ପ୍ରସ୍ତୁତ କରି ଯେପରି ଗୁଡିଆ ଆଶାୟୀ ଜନଙ୍କୁ ପରିବେଷଣ କରିଥାଏ, ସେହିପରି କୃଷ୍ଣ ଦାସ ଆୟୁର୍ବେଦ ଶାସ୍ତ୍ରର ସାର ସଂଗ୍ରହ କରି ପଣ୍ଡିତ ବୈଦ୍ୟମାନଙ୍କୁ ପରିବେଷଣ କରିଛନ୍ତି । ସେମାନଙ୍କ ପାଇଁ ଉପଦେଶ ପ୍ରଦାନ କରିବାକୁ ମଧ ପଶ୍ଚାଦ୍‌ପଦ ହୋଇନାହାନ୍ତି ।

ବୈଦ୍ୟଶାସ୍ତ୍ରର ଶେଷ ଭାଗକୁ ସେ ଉପଦେଶରେ ପରିପୂର୍ଣ୍ଣ କରି ଦେଇଛନ୍ତି । ବୈଦ୍ୟମାନଙ୍କୁ ସମ୍ବୋଧନ କରି ସେ କହିଛନ୍ତି - ହେ ସୁବୁଦ୍ଧି ସାଧୁ ବୈଦ୍ୟଗଣ ! ଚଉଷଠି ରୋଗ ଘେନି ଆମର ଦେହ ସୃଷ୍ଟି ହୋଇଅଛି । ରୋଗକୁ ଚିକିତ୍ସା କରୁଥିବା ସମୟରେ ହଠାତ୍ ରୋଗ ଛାଡ଼ିଗଲା ବୋଲି ମନ ମଧ୍ୟରେ ପ୍ରତ୍ୟୟ ସୃଷ୍ଟି କରିବ ନାହିଁ । ତାହା କ୍ଷୁଦ୍ର ରୂପ ଧରି ଗୁପ୍ତରେ ରହିଯାଇଥିଲେ ବି କେତେବେଳେ ବଢ଼ି ବଢ଼ି ପ୍ରାଣ ନାଶ କରିପାରେ । ତେଣୁ ଶାସ୍ତ୍ରମତ ଅନୁଯାୟୀ ଅଗ୍ନି ଏବଂ ବ୍ୟାଧିକୁ ମୂଳରୁ ନାଶ କରିବା

ଉଚିତ । ଯେଉଁ ବୈଦ୍ୟ ବ୍ୟାଧିକୁ ଚିହ୍ନିପାରେ ନାହିଁ, ରୋଗପାଇଁ ସେ ଯମ ସହିତ ସମାନ । ଯେପରି ତିଳ ପ୍ରମାଣ ମେଘ ସଙ୍ଗେ ସଙ୍ଗେ ବ୍ରହ୍ମାଣ୍ଡକୁ ଘୋଟାଇ ପକାଇଥାଏ ସେହିପରି ସାମାନ୍ୟ ରୋଗଟିଏ ବୃଦ୍ଧିପ୍ରାପ୍ତ ହୋଇ ମଣିଷକୁ ମୃତ୍ୟୁମୁଖକୁ ଠେଲିଦିଏ । ଯେପରି କାଠ ମଧ୍ୟରେ ଅଗ୍ନି ଗୁପ୍ତ ଭାବରେ ରହିଥାଏ, ସେହିପରି ବ୍ୟାଧି ଦେହ ମଧ୍ୟରେ ଗୁପ୍ତ ଭାବରେ ରହିଥାଏ ।

କୃଷ୍ଣଦାସଙ୍କ ମତରେ ପଞ୍ଚଭୂତରୁ ବ୍ୟାଧିସୃଷ୍ଟି ହୋଇଥାଏ । ତନ୍ମଧ୍ୟରୁ ନାଡ଼ୀ ପରୀକ୍ଷାଟି ପୃଥିବୀ ସଦୃଶ ଓ ମୂତ୍ର ପରୀକ୍ଷା ଆପ ଭୂତ ସହିତ ସମାନ । ନେତ୍ର ପରୀକ୍ଷାରୁ ତେଜ ଜଣାପଡ଼ିଥାଏ । କଥାରୁ ବାୟୁର ଲକ୍ଷଣ ପ୍ରକାଶିତ ହୁଏ । ରୋଗୀ ଯେଉଁ ଦ୍ରବ୍ୟକୁ ଆଶା କରେ ତାହା ଆକାଶଭୂତର ପରିପ୍ରକାଶ ଘଟାଏ ।

କୃଷ୍ଣଦାସ ବୈଦ୍ୟଶାସ୍ତ୍ରରେ ମଣିଷକୁ ଜଣେ ବଣିକ ଭାବରେ ଗ୍ରହଣ କରି କହିଛନ୍ତି -

ସଂସାରେ କେହି ଚିର ନୁହେଁ କି ନା । ପାପପୁଣ୍ୟ ଘେନି ବଣିଜ ସିନା ।
ଯାହା ଅର୍ଜିବ ତାହା ଭୁଞ୍ଜିବ ହିଁ । କାହାର ସଙ୍ଗତେ ନଯିବେ କେହି ॥

ବୈଦ୍ୟ ଶାସ୍ତ୍ରକୁ କେବଳ ବୈଦ୍ୟ ସମ୍ପର୍କିତ ଶାସ୍ତ୍ର ବୋଲି ଧରିବସିଲେ ଠିକ୍ ହେବନାହିଁ । ବୈଦ୍ୟମାନଙ୍କ ପାଇଁ ଯେମିତି ଅନୁଭବର କଥା ସେ ପ୍ରକାଶ କରିଛନ୍ତି ରୋଗୀମାନଙ୍କୁ ସତର୍କ କରିବା ପାଇଁ ସେମିତି ବ୍ୟାକୁଳ ହୋଇ ଉଠିଛନ୍ତି କବି କୃଷ୍ଣଦାସ । ଜଟିଳ ବୈଦ୍ୟଶାସ୍ତ୍ରକୁ ସହଜରେ ବୋଧଗମ୍ୟ କରିବା ପାଇଁ କୃଷ୍ଣଦାସ ଏଥିରେ ଭରିଦେଇଛନ୍ତି ଯେମିତି ଶବ୍ଦର ସମ୍ମୋହନୀ ଶକ୍ତି, ଉପମା ଅଳଙ୍କାରର ପ୍ରୟୋଗରେ ଏହି ଶୁଷ୍କଶାସ୍ତ୍ରକୁ ଯେମିତି କରି ପକାଇଛନ୍ତି ବୈଚିତ୍ର୍ୟମୟ । ଭକ୍ତି ଗଦ୍‌ଗଦ ଚିତ୍ତରେ କୃଷ୍ଣ ଓ ଜଗନ୍ନାଥଙ୍କ ଠାରେ ଯେପରି ନିଜକୁ ସମର୍ପଣ କରି ଦେଇଛନ୍ତି, ଉପଦେଶର ଗଙ୍ଗାଜଳରେ ସେମିତି ପବିତ୍ର କରିବାକୁ ଚାହିଁଛନ୍ତି ସମଗ୍ର ପ୍ରାଣୀ ଜଗତକୁ ।

ଆଶା କରୁଛି ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ସମ୍ମାନ ପାଇବାକୁ ଯୋଗ୍ୟ, ଜୟଦେବଙ୍କର ସମକକ୍ଷ, ବହୁଶାସ୍ତ୍ରବିତ୍ କୃଷ୍ଣଦାସଙ୍କର ଏହି ବୈଦ୍ୟଶାସ୍ତ୍ର ଗ୍ରନ୍ଥଟି ରସିକ ପାଠକଙ୍କ ଦ୍ୱାରା ଆଦୃତ ହେବ ।

ଡକ୍ଟର ଲକ୍ଷ୍ମୀକାନ୍ତ ତ୍ରିପାଠୀ

# ବୈଦ୍ୟଶାସ୍ତ୍ର

ଜୟ ଜୟ କୃଷ୍ଣ କରୁଣାସିନ୍ଧୁ । କମଳା ବଲ୍ଲଭ ଭଗତବନ୍ଧୁ ।

ଅଶେଷ କୋଟି ବ୍ରହ୍ମାଣ୍ଡଠାକୁର । ଶଙ୍ଖଚକ୍ର ଗଦା ସାରଙ୍ଗଧର ।

ସ୍ଥାବର ଜଙ୍ଗମ ପତଙ୍ଗ କୀଟ । ଜୀବ ସ୍ୱରୂପେ ହୋ ସବୁରି ଅଟ ।

ଯାହାକୁ ଯେମନ୍ତ ପ୍ରାପତ ଗତି । ତୁମ୍ଭେ ସିନା ଦେଇଅଛ ସବୁତିଂ ।

ଦୀନକୃଷ୍ଣ ଦାସ ମାଗୁଛି ବର । ଭୋ ପ୍ରଭୁ ମୋତେ ଅନୁଗ୍ରହ କର ।

ଅନୀତି ସଂସାର ଏ ମାୟା ମୋହ । ଚଉଷଠୀ ରୋଗ ଘେନିଣ ଦେହ ।

ଏଥକୁ ତୁମ୍ଭେ ଯେ କର୍ମକରତା । ବାଡ଼କୁ ଭିଆଣ କରିଛ ବତା ।

ଯେ ଦେହ ଅଛି ହାଡ଼ ଚର୍ମ ଗଢ଼ି । ବାଳ ଝିନ ପ୍ରାୟେ ସହସ୍ରେ ନାଡ଼ି ।

ହାଥେ ଚଉଳେ ହୋଇ ଯେଉଁ ନାଡ଼ି । ସୋଲ୍ୟ ତମ୍ୱରୁ ମେରୁ ଶିଖେ ବଢ଼ି ।

ଅନୀତି ସଂସାର ବୋଲି ଯହିଁକି । ସାତଶ ବାସ୍ତରି ନାଡ଼ି ତହିଁକି ।

ଏମନ୍ତ ହୋଇ ଯେଉଁ ଦେହ ଗୋଟା । ଯେହ୍ନେ ଜଳବିନ୍ଦୁ ପାଣିଫୋଟକା ।

ସତ୍ତ୍ୱ ରଜ ତମ ଏ ତିନିଗୁଣ । ଛାମୁରେ କରୁଛି ଗୁହାରୀ ଶୁଣ ।

ଧନ ସମ୍ପଦ ଦାରା ସୁତ ମୋହ । ବ୍ୟାଧି ପୀଡ଼ା କଲେ ଯାଇ ଏ ଦେହ ।

ମନୁକୁ ଔଷଧ ଦେଇଣ ତାରି । ବୈଦ୍ୟ ନାରାୟଣ ଅଟନ୍ତି ହରି ।

ଯେବଣ ରୋଗକୁ ଯେଉଁ ବିଧାନ । ନାଡ଼ି ପ୍ରତିବିଧି ଭୂତ ଲକ୍ଷଣ ।

ଶ୍ରୀମୁଖରେ ଆଜ୍ଞା ହୋଇଛି ଯାହା । ବୈଦ୍ୟମାନଙ୍କୁ କହୁଅଛି ତାହା ।

ଯେବଣ ପ୍ରକାରେ ନାଟିକା ଧରି । ଦକ୍ଷିଣେ ପୁରୁଷ ବାମେଣ ନାରୀ ।

ଦୀନକୃଷ୍ଣ ଦାସ ପ୍ରଭୁ ଶରଣ । ସୁବୁଦ୍ଧି ସାଧୁ ବୈଦ୍ୟମାନେ ଶୁଣ ।

ପୁରୁଷ ହସ୍ତର ଯେବଣ କର । ନିମିଷେ ବସାଇ ନାଟିକା ଧର ।

ତମ୍ୱରୁ କଟିରୁ ଆଙ୍ଗୁଳେ ଛାଡ଼ି । ତିନି ଆଙ୍ଗୁଳିରେ ଧରିବ ନାଡ଼ି ।

ସଳଖ୍ ଧରିବ ମନୁର କର । ଆପଣା ନିଶ୍ୱାସ କରିବ ଥିର ।

ନିର୍ବାତ ଦୀପର ବେଭାର ଯେହ୍ନେ । ମନବୁଦ୍ଧି ସ୍ଥିର ହୋଇବ ତେହ୍ନେ ।

ତିନି ଆଙ୍ଗୁଳିରେ ଧରିବ ନାଡ଼ି । ବାତ ପିତ ଆମ୍ୱ ଯେମନ୍ତେ ବାଡ଼ି ।

ପ୍ରଥମେ ତର୍ଜନୀ ଆଙ୍ଗୁଳି ଏକ । ଅଳପ କରି ଥିର କରି ଯାକ ।
ସେ ଆଙ୍ଗୁଳି ସରୁ ଲାଗିବ ଯେବେ । ବିଜୁଳି ପ୍ରାୟେ ଲାଗୁଥିବ ବେଗେ ।
ଘଞ୍ଚ ବିଜୁଳି ଯେହ୍ନେ ମାରେ ଲଟା । ତେବେ ସେ ଜାଣିବ ପିତ୍ତ ଚେରେଷ୍ଟା
ମଝି ଆଙ୍ଗୁଳିର ନାଡ଼ି ସ୍ୱଭାବେ । ସର୍ପ ଜିଭ ପ୍ରାୟେ ଲାଗିବ ଯେବେ ।
ଲହ ଲହ ହୋଇ ବହେ ସରିତ । ଏମନ୍ତ ନାଡ଼ିକି ବୋଲିବି ବାତ ।
ତଳ ଆଙ୍ଗୁଳିରେ ନାଟିକା ଯେହୁ । ମୋଟ ହୋଇ ଯେବେ ଲାଗିବ ସେହୁ ।
ଅତି ବ୍ୟଗ୍ର ନୋହି ଯହରା ବେଶ । ଏହାକୁ ବୋଲିଟି ଆମ୍ଳ ପ୍ରକାଶ ।
ବକ୍ର ହୋଇ ବହେ ବାତ ପ୍ରବଳ । ପିତ୍ତର ନାଟିକା ଅତି ଚପଳ ।
ଆମ୍ଳ ନାଟିକା ମୋଟ ଭାବେ ଗରୁ । ସନ୍ନିପାତ ନାଡ଼ି ବହଇ ସରୁ ।
ବିଭୋର ହୋଇଣ ପଛକୁ ପେଲି । ମୟୂର ପ୍ରାୟେ ଧୀରେ ଧୀରେ ଚାଲି ।
ବାତ ପିତ୍ତରେ ଶଳିମଷା ଭେଦ । ଏମନ୍ତ ନାଡ଼ିକି ବୋଲି ପ୍ରମାଦ ।
କ୍ଷଣକେ ଥାଇ କ୍ଷଣକେ ନ ପାଇ । କ୍ଷଣକେ ଯାଇ ମୃତ୍ୟୁ ଘରେ ଥାଇ ।
ଜାଣିଲେ ନୁହଇ ବିଷମ ସନ୍ଧି । ଅନୁଭବ ଥିଲେ ପାରିବ ବୁଦ୍ଧି ।
ସର୍ପ ଆକାରେ ବାତ ନାଡ଼ି ଚାଲେ । ବକ୍ର ହୋଇଣ ଉପରକୁ ପେଲେ ।
ପିତ୍ତନାଡ଼ି ଗତି ନୋହେଟି ମୋଟ । ଦକଦକ ଯେହ୍ନେ ମଣ୍ଡୁକୀ କଣ୍ଠ ।
ନୋହିଲେ କୁଆ ଆଖି ପ୍ରାୟ ହୋଇ । ମିଟି ମିଟି ହୋଇ ଚାହିଁଣ ଥାଇ ।
ଏହାକୁ ପିତ୍ତ ନାଡ଼ି ବୋଲି ଜାଣ । ସୁବୁଦ୍ଧି ସାଧୁ ବୈଦ୍ୟମାନେ ଶୁଣ ।
ବାତନାଡ଼ିର ଯେ ଏମନ୍ତ ଗତି । ଯେମନ୍ତ ପ୍ରକାରେ ଚଳଇ ହସ୍ତୀ ।
ବକ୍ର ହୋଇଣ ଉପରକୁ ଯାଏ । ମୁଣ୍ଡ ହଲାଇ କଙ୍କଡ଼ାର ପ୍ରାୟେ ।
ନୋହିଲେ କୁକୁଡ଼ା କଣ୍ଠ ଯେମନ୍ତ । ଦକ ଦକ ହୋଇ ବହେ ମରୁତ ।
ଏତେ ପ୍ରକାରେ ଯେଉଁ ନାଡ଼ି ବହେ । ଏକାଙ୍ଗବାତ ବୋଲି ତାକୁ କହେ ।
ବାତ ଶଳିମଷା ନାଡ଼ିର ଗୁଣ । କହିବା ସାଧୁ ବୈଦ୍ୟମାନେ ଶୁଣ ।
ବକ୍ର ହୋଇଣ ବହୁ ଥାଇ ବେଗି । ଜୋକ ପ୍ରାୟେ ଦୁଇ ଆଡ଼କୁ ଲାଗି ।
ବାତ ସନ୍ନିପାତ ନାଡ଼ି ବେଭାର । ଏଣ୍ଡୁଅ ପ୍ରାୟେ କରି ଛାଟେ ଶିର ।
ଯେହ୍ନେ ଚାଲଇ ରାଜହଂସ ପକ୍ଷୀ । କୁକୁଡ଼ା ପ୍ରାୟେ ମିଟିମିଟି ଆଖି ।

ନୋହିଲେ କୁଶର ଅଗ୍ର ଯେମନ୍ତ । ବାତ ସନ୍ନିପାତ ନାଡ଼ି ତେମନ୍ତ ।
ଉଡ଼ଇ ବୁଡ଼ଇ ଛାଟଇ ନାଡ଼ି । ଡମ୍ବରୁ ଆକାରେ ବୁହଇ ଛାଡ଼ି ।
ଡିଆଁଇ ଚଞ୍ଚଳ ନାଗଇ ଛନ୍ନ । ଏମନ୍ତ ମନ୍ଦୁ ଜୀଏ ତିନିଦିନ ।
ମନ୍ଦ ମନ୍ଦ ହୋଇ ବହଇ ନାଡ଼ି । କ୍ଷଣକେ ଯାଏ କଟଟିରୁ ଛାଡ଼ି ।
କ୍ଷଣକେ ବୁଡ଼ଇ କ୍ଷଣକେ ଉଦେ । ନଉକା ପ୍ରାୟେ ଲାଗୁଥାଏ ହାଦେ ।
ଏମନ୍ତ ମନ୍ଦୁ ଅଟେ ଅଲକ୍ଷଣ । ମୃତ୍ୟୁ ପାଇ ତିନିଦିନେଣ ପୁଣ ।
ଯେବଣ ନାଡ଼ି ଟଳଟଳ ବେଶ । ସୁଖରେ ଯେସନେ ଚାଲଇ ହଂସ ।
ଡମ୍ବରୁ ଛାତି ଓହଳଇ ଦୂରୁ । କୁଶ ଅଗ୍ର ପ୍ରାୟେ ଲାଗଇ ସରୁ ।
ଝିଲିମିଲି ହୋଇ ନ ପାଇ କୂଳ । ଯେହ୍ନେ ହଲୁଥାଇ ମୟୂର ଚୂଳ ।
କ୍ଷଣ କ୍ଷଣକେ ନାନା ରୂପ ଧରେ । ଏମନ୍ତ ମନ୍ଦୁ ତିନିଦିନେ ମରେ ।
ବାତ ଶଲିଷମା ନାଡ଼ି ବିଧାନ । ପାଳରୁ ଯେସନେ ଛାଡ଼ଇ ଧାନ ।
କାଠ ଭିତରେ ଥାଇ ଯେହ୍ନେ ଯୂଇ । ବାତ ଶଲିଷମା ଏମନ୍ତ ହୋଇ ।
ସ୍ତିରୀକି ବହୁତ ହୁଏ ଆକଟ । ଏମନ୍ତ ବ୍ୟାଧି ପୁରୁଷକୁ ଘାଟ ।
ପିତ୍ତରେ ଯେହ୍ନେ ଶଲିଷମା ଜଡ଼ି । ଟର ଟର ହୋଇ ଲାଗଇ ନାଡ଼ି ।
ତିନିଟିପ ଯାକ ବହଇ ସରୁ । ବଇଦ ହୋଇଲେ ବିଚାର କରୁ ।
ଶୀତଳ ହୋଇଣ ବହେ ପବନ । ଅତି କ୍ଷିର୍ନ୍ନ ଅତି ଲାଗଇ ଖିନ ।
କ୍ଷଣକେ କ୍ଷେପଇ କ୍ଷଣକେ ବୋହି । ପିତ୍ତ ଶଲିଷମା ଏହାକୁ କହି ।
ଚିହ୍ନ ଚିହ୍ନ ବୈଦ୍ୟ ରୋଗର ବାଟ । ଏମନ୍ତ ପିତ୍ତ ଯେ ସ୍ତିରୀକି ଘାଟ ।
ପିତ୍ତଶଲିଷମା ହୋଇଲେ ସ୍ତିରୀ । ନ ଜାଣିଲେ ଯାଇ ଅକପେ ମରି ।
ଏମନ୍ତ ବାତ ନାଡ଼ି ଖରେ ବହି । ଅତି ଉଗ୍ର ଭାବେ ଚପଳ ହୋଇ ।
ତିନି ଟିପ ଏକା ପ୍ରକାରେ ବହେ । ଝଟକି ଲାଗଇ ବିଜୁଳି ପ୍ରାୟେ ।
ନୋହିଲେ ଲାଗେ ଶାଗୁଣା ଯେମନ୍ତ । ବୃକ୍ଷକୁ ଯେସନେ ପବନ ଘାତ ।
ଝାକିଲା ଝାକିଲା ହୋଇଣ ଥାଇ । ଏକାନ୍ତ ବାତଟି ଏହାକୁ କହି ।
ଏହାକୁ ବୋଲିଟି ଏକାନ୍ତ ବାତ । ସୁବୁଦ୍ଧି ସାଧୁ ବୈଦ୍ୟମାନେ ଚେତ ।
ସନ୍ନିପାତ ନାଡ଼ି ଦେଉଛି କହି । ବେଙ୍ଗ କଣ୍ଠ ପ୍ରାୟେ ହଲୁଣ ଥାଇ ।

ହଂସ ଯେହ୍ନେ ଜଳ ପହଁରିଯାଏ । ନୋହିଲେ ଚାଲଇ ବିଚିତ୍ର ପ୍ରାୟେ ।
ଘରଚଟିଆ ଚଢ଼େଇ ଯେମନ୍ତ । ଛୋଟ ଛୋଟ ହୋଇ ଡେଇଁ ତେମନ୍ତ ।
ଡିଅଁଇ ଗଡ଼ଇ କ୍ଷଣକେ ପଡ଼ି । ସନ୍ନିପାତ ବୋଲି ଏମନ୍ତ ନାଡ଼ି ।
ଜୋକ ଯେସନ ଦୁଇମୁଣ୍ଡି ଧରେ । ବାତ ନାଡ଼ି ବହେ ସେହି ପ୍ରକାରେ ।
ଜୋକର ଚାଲିବା ଭାବ ପଛକୁ । ଦୋହଲି ହୁଅଇ ଆଗ ପଛକୁ ।
ବେଙ୍ଗ କଣ୍ଠ ଯେହ୍ନେ ଦୁଲୁକି ଥାଇ । ପିତ୍ତ ନାଡ଼ି ବହେ ଏମନ୍ତ ହୋଇ ।
ନୋହିଲେ କକୁଡ଼ା ରାବ ଯେମନ୍ତ । ଦୁକୁ ଦୁକୁ ହେଉ ଥାଇ ତେମନ୍ତ ।
ବାତ ପିତ୍ତର ଶଳିଷମା କୋପେ । ଏ ନାଡ଼ି ଚାଲଇ ଏମନ୍ତ ରୂପେ ।
ତ୍ରିଭଙ୍ଗୀ ହୋଇ ଯେ ନାଟିକା ବହି । ସନ୍ନିପାତ ବୋଲି ଏହାକୁ କହି ।
ବାତରେ ଯେବେ ଚନ୍ଦ୍ର ଥିବ ଏକା । ମାନୁଷ ଗତିରେ ବହେ ନାଟିକା ।
କ୍ଷିନ୍ନ ହୋଇଣ ସରୁ ଭାବେ ବହେ । ମଝିରେ ଲୁଚିଣ ଗୁପତେ ରହେ ।
ପୂର୍ଣ୍ଣ ଚନ୍ଦ୍ରମା ପାଇଥିବ୍ର ଯେବେ । ସେ ନାଡ଼ି ଚାଲଇ ଏମନ୍ତ ଭାବେ ।
ଜୁଳୁଜୁଳା ପୋକ ପ୍ରାୟକ ହୋଇ । ଝିଲିମିଲି ହୋଇ ଲାଗୁଣ ଥାଇ ।
କ୍ଷଣକେ ବହଇ କ୍ଷଣେ ନ ମିଳି । ତର୍ଜନୀ ମୁଦ୍ରିକା ମଧ୍ୟ ଆଙ୍ଗୁଳି ।
ଏ ତିନି ଆଙ୍ଗୁଳି ଘେନିଣ ବୈଦ୍ୟ । ନାଡ଼ି ଉଚ୍ଚାରିଣ ଦେଲା ଔଷଧ ।
ନାଡ଼ି ଯେବେ ଅତି ଦେଖିବ ଭିନ୍ନ । ନୋହିଲେ ହିଁ ଅତି ହୋଇବ କ୍ଷିନ୍ନ ।
ହସ୍ତରେ ଯେବେ ନ ଲାଗିବ କିଛି । ମୃତ୍ୟୁ ଭେଦ ବୋଲି ସାହାସ୍ତ୍ରେ ଅଛି ।
ଡମ୍ବରୁ ଆକାରେ ଯେବଣ ନାଡ଼ି । ଦୁଇ ମୁଣ୍ଡରେ ବହୁଥାଇ ମାଡ଼ି ।
ସଧିରେ ଯେବେ ନ ଲାଗିବ ଖରେ । ଏ ମନୁ ମରଇ ଦୁଇ ଦିନରେ ।
ଅତି କ୍ଷିନ୍ନ ଯଦି ଲାଗିବ ନାଡ଼ି । କ୍ଷଣକେ ଦୃଶ୍ୟ କ୍ଷଣକେ ଯାଇ ଛାଡ଼ି ।
ପଛକୁ ଓହରି ହୋଇ ସ୍ୱଭାବେ । ଚନ୍ଦ୍ର ଘରକୁ ଲାଗିଯିବ ଯେବେ ।
ବୈଦ୍ୟ ତାହାକୁ କି କରିବ ଜଗି । ଅଳପ କ୍ଷଣ ଜୀଅଇ ଏ ରୋଗୀ ।
ହେ ବୁଧ ଜନେ ସାବଧାନେ ଶୁଣ । ନାଡ଼ି ଲକ୍ଷଣ ଯେ ଜାଣଇ ପୁଣ ।
ସେହି ସେ ଜାଣଇ ଆଗତ କଥା । ଜାଣି ନ ଜାଣଇ ନାଡ଼ି ବ୍ୟବସ୍ଥା ।
ଗିରିଜା ପତି ମହାଦେବ ଯେହୁ । ନାଡ଼ିର ଲକ୍ଷଣ ଜାଣନ୍ତି ସେହୁ ।

ଦେବତାମାନଙ୍କୁ ଗୋଚର ନାହିଁ । ନର ମାନବ ତା ଜାଣିବେ କାହିଁ ।
ଗତ ବାସନା ଆଜ୍ଞା ବାସୁଦେବ । ଅନୁଭବ ଯାହା ହୃଦରେ ଥିବ ।
ସେହି ସେ ଥୋକାଏ ଜାଣିବ ଏହା । ଅଧିକ ଅବାମୁଁ କହିବି କାହା ।
ଅଦୃଷ୍ଟି, ଅଶ୍ରୁତି ଯେବଣ କଥା । ଯେ ଏହା ଜାଣଇ ସେହି ବକତା ।
ତାହାଙ୍କୁ ବୋଲିବା ବିଷ୍ଣୁ ସେବକ । ବିଷ୍ଣୁଙ୍କ ଭକତ ସେବଣ ଲୋକ ।
ଶ୍ରୀ ଜଗନ୍ନାଥଙ୍କୁ ଶରଣ ଯାଇ । ଦୀନକୃଷ୍ଣ ଦାସ ସାହାସ୍ରେ କହି ।
ସେ ପ୍ରଭୁ କରୁଣା ହୋଇଲେ ଯେଣୁ । ବୈଦ୍ୟ ସାହାସ୍ର ମୁଁ କହଛି ତେଣୁ ।
ମୁତ(୧) ଧରିବାର ଏମନ୍ତ ବିଧି । ତାହା କହିଦେବା ଶୁଣ ସୁବୁଦ୍ଧି ।
ସୁବୁଦ୍ଧି ସାଧୁ ବୈଦ୍ୟ ମାନେ ଶୁଣ । ନାନା ବର୍ଣ୍ଣରେ ପରିସ୍ରାବ ଗୁଣ ।
ପ୍ରଭାତେ ମୂତ୍ର ଯେ କଂସାରେ ଧରି । ନୋହିଲେ ମାଟି ପିହାଣରେ ଭରି ।
ତିନି ଦଣ୍ଡ ଯାଏ ଖରାରେ ଥିବ । ଆଗପଛ ମୂତ୍ର (୨)ଇଡ଼ିଣ ଦେବ ।
କୁଶ ଅଗ୍ରେ ପକାଇବ ତଇଳ । ନୋହିଲେ ତିରଣ ଅଗ୍ର ହିଁ ଭଲ ।
ତିନି ମୁହୂର୍ତ୍ତ ଅନାଇବ ରହି । ଯେଉଁ ଦିଗେ ଯିବ ଯେମନ୍ତ ହୋଇ ।
ଯେଉଁ ଦିଗକୁ ସେ ଚାଲିବ ଖର । ଦୃଢ଼ କରି ତାକୁ ହୃଦରେ ଧର ।
ପ୍ରଭାତେ ପୂର୍ବକୁ ଚାଲିଲେ ତୈଳ । ଜାଣିବ ଏ ମଣ୍ଡୁ ହୋଇବ ଭଲ ।(୩)
ମଧ୍ୟାହ୍ନେ ଯେବେ ପଶ୍ଚିମକୁ ଯାଇ । ସେ ମଣ୍ଡୁ ଜୀଅଇ ବିରୁଦ୍ଧ ନାହିଁ ।(୪)
ତିନି ପ୍ରହରେ ଉପରକୁ ଯାଏ । ସେ ମଣ୍ଡୁ ତରଇ ନ ଥାଏ ଭୟେ ।
ଆବର କଥା କହି ଦେବାଟି ଭଲ । ଏମନ୍ତ ପ୍ରକାରେ ଚାଲଇ ତୈଳ ।
ବାତ ଯେହୁ ମଣ୍ଡୁ ଦେହରେ ଥାଇ । ସର୍ପ ପ୍ରାୟେ ହୋଇ ତୈଳ ଯାଇ ।(୫)
ପିତ୍ତରେ ଅତି ଶୀଘ୍ର ଯାଏ ଚାଲି । ଖଣ୍ଡ ଖଣ୍ଡ ହୋଇ କାଟଇ ଜାଲି ।
ଆମ୍ବ ଦେହେ ଟଙ୍କା ପ୍ରାୟକ ହୋଇ । ସଧିରେ ସଧିରେ ହୋଇଣ ଯାଇ ।
କମ୍ପୁଥିଲା ମଣ୍ଡୁ ଯୁଗତେ ପାଠ । ବିନ୍ଦୁରେ ତୈଳ ନ ଚାଲଇ ବାଟ ।(୬)
ମେଣ୍ଢା ଆଖି ଗୋଟା ପ୍ରାୟେ ସ୍ୱଭାବେ । ଥମ୍ଭିଭୂତ ହୋଇ ରହଇ ଠାବେ ।

---

(୧) ଖ ପୋଥି- ମୂତ୍ର ଧରିବାର ଯେବଣ ବିଧି (୨) ଖ ପୋଥି - ଆଗପଛ ଦୁଇ ଇଡ଼ିଣ ଦେବ ।
(୩) ଖ ପୋଥି - ତେବେ ଜାଣିବ ସେ ଅଟଇ ଭଲ । (୪) ଖ ପୋଥି - ଭୟ ନ ଥାଇ
(୫) ଖ ପୋଥି - ଗମଇ (୬) ଖ ପୋଥି - ଘାଟ

ଅଲକ୍ଷଣ ବୋଲି ତାହାକୁ କହି । ଅଧିକ ଦିନ ମନ୍ଦୁ ନ ରହଇ ।
ପ୍ରସାବ ଭାବ ବୁଝ ବୈଦ୍ୟଜନ । ବିଚାରି ବୁଝୁ ଥାଅ ମନେ ମନ ।
ଛେଳି ମୂତ୍ର ପ୍ରାୟେ ଜୋତି ଆଭାସି । ନୋହିଲେ ଗୋମୂତ୍ର ପ୍ରାୟେକ ଦିଶି ।
ଖର ପ୍ରାଣୀ ପ୍ରାୟେ(୧) ଦିଶିଲେ ମନ୍ଦ । ନିଶ୍ଚୟ ଜାଣିଥା ଏ ବ୍ୟାଧି ଦୃଢ ।
ଆବର ଅଧିକ ନ କହ କିନା । ଧର୍ମକେ ଏ ମନ୍ଦୁ ବ୍ରତଇ ସିନା ।
ନୋହିଲେ ଆର୍ଦ୍ରାବଳୀ ପ୍ରାୟେ ଯିବ(୨)। ଆଦିତ୍ୟ ମଣ୍ଡଳ ପ୍ରାୟେ ଦିଶିବ ।
ନୀଳବର୍ଣ୍ଣ ପ୍ରାୟେ ବର୍ଣ୍ଣ ସ୍ୱଭାବେ । ଏତେ ଅଲକ୍ଷଣ ଦିଶିବ ଯେବେ ।
ସେ ମନ୍ଦୁ କେବେ ହେଁ ନୁହଇ ସାଧ । ବିଚାରି ବୁଝ ହେ ପଣ୍ଡିତ(୩) ବୈଦ୍ୟ ।
ଏମନ୍ତ ମନ୍ଦୁ ଯେ ବ୍ରତିବ କାହିଁ । ପାଣ୍ଡୁର ବର୍ଣ୍ଣ ଯେ ଘୃତ ଦିଶଇ ।
କୂଳ ନ ପାଇଣ ଫୁଟେ ତ୍ୱରିତ । ସେ ମନ୍ଦୁ ନିଶ୍ଚୟ ହୁଅଇ ହତ ।
ସୁବୁଦ୍ଧି ସାଧୁ ବୈଦ୍ୟମାନେ ଶୁଣ । ଧ୍ରୁବ ବୋଲି କରି ଏକଥା ଜାଣ ।
ହରିତକ ପ୍ରାୟେ ଦିଶିଲେ ପାଣି । ଏକାନ୍ତ ଆମ ବୋଲି ତାକୁ ଜାଣି ।
କଳା ପାଣି ପ୍ରାୟେ ଦିଶିବ ଯେବେ । ବାତ ଶଳିଷମା(୪) ବୋଲିବ ତେବେ ।
ପାଣ୍ଡୁର ବର୍ଣ୍ଣ ଦିଶିଲେ ଉପମା । ତାହା ଜାଣିମ ବାତ ଶଳିଷମା ।
ପାଣିରେ ଯେବେ ତଇଳ ପକାଇ । ଚାରିଦିଗକୁ ଏକାବେଳେ ଯାଇ ।
ସେ ମନ୍ଦୁ କେବେ ହେଁ ଭଲ ନୁହଇ । ଶୁଣ ହେ ବୈଦ୍ୟ ସାବଧାନ ହୋଇ ।(୫)
ତଇଳ ଯେବେ ଦକ୍ଷିଣକୁ ଯାଇ । ନୋହିଲେ ଉତ୍ତର ଦିଗେ ଗମଇ ।
ଇଶାନେ ଯାଉ କି ବାୟବେ ଯାଉ । ପଶ୍ଚିମେ ଗଲେ ନ ବ୍ରତଇ ଆଉ ।
ଆବର ଘୃତ ବୁଝ ପରିମାଣି । ଯେହ୍ନେ ଦିଶୁଥାଇ ବରଷା ପାଣି ।
ନୋହିଲେ ଘୋଡ଼ାର ଘୃତ ଯେସନ । ହସ୍ତୀ ମୁତ ପ୍ରାୟେ ଦିଶଇ ବର୍ଣ୍ଣ ।
ଶଶାମୂତ ପ୍ରାୟେ ଦିଶିବ ଯେବେ । ତ୍ରିଦୋଷ ସନ୍ନିପାତ ବୋଲି ତେବେ ।

---

(୧) ଖ ପୋଥି - ଶଶା ମୂତ୍ର ପରି
(୨) ଖ ପୋଥିରେ ଅଧିକ- ନୋହିଲେ ସେ ମନ୍ଦୁ ବର୍ତ୍ତିବ କାହିଁ । ଏକଥା ସ୍ୱରୂପ କହିଲି ମୁହିଁ
ଯେବଣ ମୂତ୍ରେ ତୈଳ ପଶବେଶ । ତାହୁଁ ତାହୁଁ ଯେବେ ହୋଏ ଅଦୃଶ୍ୟ
(୩) ଖ ପୋଥି - ସୁଭଦ୍ର (୪) ଖ ପୋଥି - ସନ୍ନିପାତ
(୫) ଖ ପୋଥି - କେବେହେ ସେ ମନ୍ଦୁ ନୁହଇ ସାଧ । ସାବଧାନ ହୋଇ ଶୁଣ ହୋ ବୈଦ୍ୟ ।

ବାତ ଦେହ କଥା ଏମନ୍ତ ଜାଣି । ପାଣ୍ଡୁର ବର୍ଣ୍ଣ ଦିଶୁଥାଇ ପାଣି ।
ପିତ୍ତରେ ରକତ ବର୍ଣ୍ଣ ଆଭାସି । କଫ ଥିଲେ ଏହି ରୂପେ ପ୍ରକାଶି ।(୧)
କଳାବର୍ଣ୍ଣ ଯେବେ ଦିଶିବ ପାଣି । ସନ୍ନିପାତ ବୋଲି ଏହାକୁ ଜାଣି ।
ବାତ ବେଳେ ସର୍ପଗତିରେ ଗମେ । ପିତ୍ତରେ ଅତିବେଗ(୨) ହୋଇ ଭ୍ରମେ ।
ଖଣ୍ଡ ଖଣ୍ଡ ହୋଇ ଛିଡ଼ଇ ଯେବେ । ଜାଲି ଫାଶ କଲେ(୩) ଯେମନ୍ତ ଭାବେ ।
ଏକାନ୍ତ ବାତ ଯେଉଁ ଦେହେ ଜାଣି । ପାଣ୍ଡୁର ବର୍ଣ୍ଣ ଦିଶୁଥାଇ ପାଣି ।
ନୋହିଲେ ସୁବର୍ଣ୍ଣ କଣିକା ମତ । ଘୋଳ ଦହି ପ୍ରାୟ ଦିଶଇ ଘୃତ ।
ତଇଳ ତହିଁ ପକାଇବ ଯେବେ । ବାଙ୍କ ବାଙ୍କ ହୋଇ ରହଇ ଠାବେ ।
ଏକାନ୍ତ ବାତର ଏମନ୍ତ ଗୁଣ । ସନ୍ତୋଷ ହୋଇ ବୈଦ୍ୟଜନେ ଶୁଣ ।
ଯେବେ ହୋଇଥାଇ ଏକାନ୍ତ ପିତ୍ତ । ତଇଳ ଦିଶଇ ଜୋକ(୪) ରକତ ।
ଚଞ୍ଚଳ ହୋଇ ଉଡ଼ିଯାଇ ଖରେ । ସଧୀର ହୋଇ ନ ରହଇ ତାଳେ ।(୫)
ଖଣ୍ଡ ଖଣ୍ଡ ହୋଇ ଛିଡ଼ିଣ ଯାଇ । ଏକାନ୍ତ ପିତ୍ତଟି ଏହାକୁ କହି ।
ଏଥକୁ ସାନ୍ତ୍ୱନା କର ଯୁଗତ । ପଇଡ଼ ପାଣି ଯେ ପଖାଳ ଭାତ ।
ଆବର ଚନ୍ଦନ ହଳଦୀ ଲେପ । ଯେମନ୍ତ ଛାଡ଼ଇ ହୃଦର ତାପ ।(୬)
କଫ ଶଳିଷମା ଯେବଣ ଜନ । ଘୃତ ଦିଶୁଥାଇ ଶୁକଳ ବର୍ଣ୍ଣ ।
ସ୍ଫଟିକ ପ୍ରାୟେ ହୋଇ ଗୋଟି ଗୋଟି । ଫେଣ ପ୍ରକାଶଇ ଭିତରୁ ଫୁଟି ।
ତଇଳ ଆଦିତ୍ୟ ପ୍ରାୟେକ ଦିଶି । ନ ଚଳେ ମୁଣ୍ଡିଆ ପ୍ରାୟେ ଆଭାସି ।
ଏକାନ୍ତ କଫର ଏହି ବେଭାର । ଏମନ୍ତ ମନୁକୁ ଉପାସ କର ।
ପୋଡ଼ା ଦେଇ ଦେବ କୋଳଥ ମଣ୍ଡ । ପାଞ୍ଚନ ଏଥକୁ ବିହିବ ଦଣ୍ଡ ।
ତହିଁ ଉତ୍ତାରେ ରସ ଦେବ ନେଇ । ବାତ ପିତ୍ତ ଯାହା ଦେହରେ ଥାଇ ।
ପାଣି ଦିଶୁଥାଇ ରକତ ଭଳି । ହଳଦୀରେ ଯେହ୍ନେ ରୁଧିର ବୋଳି ।
ଘୃତ ଏମନ୍ତ ପ୍ରାୟେ ଯେବେ ଦିଶି । ନୋହିଲେ ପଚା ବର୍ଣ୍ଣ ପ୍ରାୟେ ଦିଶି ।

---

(୧) ଖ ପୋଥି - ପିତରେ ରକତ ବର୍ଣ୍ଣ ଆଭାସ । କଫ ଥିଲେ ଫେନ ହୁଏ ପ୍ରକାଶ ।
(୨) ଖ ପୋଥି - ଖର (୩) ଖ ପୋଥି - ଜାଲ ପାଚିଥାଇ (୪) ଖ ପୋଥି - କଞ୍ଜା
(୫) ଖ ପୋଥି - ତଇଳ ପଡ଼ନ୍ତେ ଉଡ଼ଇ ଖରେ । ଦୃଷ୍ଟ ଉତ୍ତୁରଇ ଯେଉଁ ପ୍ରକାରେ
(୬) ଖ ପୋଥି - ଦେହ ଉତ୍ତାପ

ଫୁଟଇ ନାହିଁ ନ ବାନ୍ଧଇ ଜାଲି । ବାତ ପିତ ହାଦେ ଏହାକୁ ବୋଲି ।
ଚାଟିଆକ ଯାକ ଘୋଟଇ ସବୁ । ଏମନ୍ତ ମଳୁକୁ ପଖାଳ ଦେବୁ ।
ପଇଡ଼, ପଣା, ଚନ୍ଦନ, ହଳଦୀ । ଏମନ୍ତ ପ୍ରକାରେ ସାନ୍ତ୍ୱନା ବିଧି ।
ବାତରେ ଯେମନ୍ତ ଶ୍ଳେଷମା ଭେଦ । ଏମନ୍ତ ମଳୁ ଟି ବଡ଼ ପ୍ରମାଦ ।
ଏ ମୁତ ପାଣ୍ଡୁର ସ୍ୱଭାବ ଜାଣି । ନୋହିଲେ ଦିଶିବ ପଇଡ଼ ପାଣି ।
ଘୋଳପଡ଼ି ଫେଣ ଉପରେ ଥାଇ । ତଇଳ ରହଇ ନିଚଳ ହୋଇ ।
ବାତ ଶଳିଷମା ବ୍ୟାଧିର ଭାବ । ଦଶମୂଳ ଘେନି ପାଞ୍ଚନ ଦେବ ।
ଚିକିତ୍ସା କରି ଧରିଥିବ ପଥି । ବଳିଆର ଯେବେ ଦେଖିବ ଏଥି ।
ବ୍ୟାଧିକି ଟାକି ବେଗେ ଦେବ ରସ । ତେବେ ଯେ ଏଥିରେ ରହଇ ଯଶ ।
ପିତ୍ତରେ ଭେଦ ଶଳିଷମା ଜାଣି । ମୁତ ଦିଶୁଥାଇ ବରଷା ପାଣି ।
ଛିଦ୍ର ହୋଇଣ ପଡ଼ିଥାଇ ଜଳ । ପାଣି ଦିଶୁଥାଇ ଅତି ନିର୍ମଳ ।
ତଇଳ ପଡ଼ିଲେ ଚାଳଇ ଛନ୍ଦେ । ଜାଣି ପ୍ରାୟ ହୋଇ ପରଳ ବାନ୍ଧେ ।
ଦୋଷ ବ୍ୟାଧି ବୋଲି ଏହାକୁ କହି । ଏହାକୁ ଚିକିତ୍ସା କରିଣ ଥାଇ ।
ଆକଟ କରି ଏ ବ୍ୟାଧିକି ଦଣ୍ଡ । ପୋଡ଼ାଦେଇ ଦେବ କୋଳଥ ମଣ୍ଡ ।
ଚତୁର୍ଦ୍ଦଶାଙ୍ଗ ଯେ ଅଳାହି ବିଧି । ଏମନ୍ତେ ଏ ବ୍ୟାଧି ହୁଅଇ ସାଧି ।
ଆମ୍ବବାତର ପରିସ୍ରାବ ଚିହ୍ନ । ମଦ୍ୟ ଘୋଳ ପ୍ରାୟେ ଦିଶଇ ବର୍ଣ୍ଣ ।
ତଇଳ ଦେଲେ ଅମ୍ବିଭୂତ ହୁଏ । ଚିହ୍ନ ଗୋଟି ପ୍ରାୟେ ହୋଇଣ ରହେ ।
ମେଣ୍ଢା ଆଖି ପ୍ରାୟେ ଯେସନେ ଚାହିଁ । ନୋହିଲେ ତଇଳ ବୁଡ଼ି ପଡ଼ଇ ।
ଦୋଷ ଭେଦ ବୋଲି ଏମନ୍ତ ଜାଣ । ଝାମ ଦେଇ କର ପୋଡ଼ା ଭିଆଣ ।
ବାତ ପିତ୍ତ ଯେବେ ହୁଅନ୍ତି ଭେଟ । ଦେହ ହେଉ ଥାଇ ଦଗଧ ରେଟ ।
କରଚରଣ ପୁଡୁଥାଇ ଯାର । ରାତ୍ର ଦିବସ କରୁଥାଇ ଜ୍ୱର ।
ପରିସ୍ରାରେ ଯେବେ ତଇଳ ପଡ଼ି । ପବନ ପ୍ରାୟେ ବେଗେ ଯାଇ ଉଡ଼ି ।
ଏଥକୁ ସାନ୍ତ୍ୱନା କରି ସମ୍ଭାଳ । ହଳଦୀ ପଇଡ଼ ପଣା ପଖାଳ ।

---

ପିତ୍ତରେ ଭେଦ ଶଳିଷମା ଜାଣି । ମୂତ ଦିଶୁଥାଇ ବରଷା ପାଣି ଠାରୁ
ତଇଳ ହୋଇଲେ ଏମନ୍ତ ବର୍ଣ୍ଣ । ସେ ମଳୁ ମରଇ ଧ୍ରୁବ ବଚନ
ପର୍ଯ୍ୟନ୍ତ ଖ ପୋଥିରେ ନାହିଁ ।

ବସା ଦହି ଦେଇ ତୋଷିବୀ ମନ । ଦେହରେ ବୋଳିବା ବାସି ଚନ୍ଦନ ।
ବାତ ପିତ୍ତ ଯେବେ ଅଧିକ ହୋଇ । ପୁତ୍ରକୁ ଯେସନେ ସେନେହ ପାଇ ।
ସେହି ଭାବେ କର ସାନ୍ତ୍ୱନା ମତ । ହଳଦୀ ଚନ୍ଦନ ପଖାଳ ଭାତ ।
ପଇଡ଼ ପଣା ବସା ଦହି ନେଇ । ନବାତ ଧଣିଆ ମୁଥା ହିଁ ଦେଇ ।
ଚତୁର୍ଜାତକ ଯେ କରିବ ପୁଣ । ଏତେ ପ୍ରକାରରେ ଲୋଡ଼ିଙ୍କି ଆଣ ।
ପଇଡ଼ ଜଳ ପରିସ୍ରାବ ଜାଣି । ନୋହିଲେ ଦିଶଇ ନଦୀର ପାଣି ।
ତଳେ ଘୋଳ ପଡ଼ି ତାପରେ ଫେଣ । ତଇଳ ପଡ଼ିଲେ ହେବ ଆରଣ ।
ବାତ ନାଡ଼ି ଜୀର୍ଣ୍ଣ ହୋଇ ପ୍ରସରେ । ଦୁଇଶ ଦଣ୍ଡରେ ଏ ମଣୁ ମରେ ।
ଆଦିତ୍ୟ ବର୍ଣ୍ଣ ଯେଉଁ ପାଣି ଦିଶି । ଉପରେ ତାର ଫେଣ ଥାଇ ମିଶି ।
ପିତ୍ତ ନାଡ଼ି ବୋଲି ଚିହ୍ନି ବିଚାରି । ତିନିଶ ଦଣ୍ଡରେ ଏ ମଣୁ ମରି ।
ଯେବଣ ମୁତ୍ର କଳା ପାଣି ପ୍ରାୟେ । ତଇଳ ପଡ଼ିଲେ ନିଚଳେ ରହେ ।
ଦେହେ ତାର ତୃଷା କେ କରୁଲେଖା । ଭିତରେ ହାଡ଼ କମ୍ପୁଥାଇ ଏକା ।
ଜିଭ ଶୁଖି ଯେବେ ହୁଅଇ କାଠ । ବ୍ୟାଧି ହୁଅଇ ବେନିପାଦ ପୃଷ୍ଠ ।
ମେରୁକୁ ବୋଲି ହେଉଥାଇ ବିନ୍ଧି । ଘୋଳି ତମ୍ଭୁ ହାଡ଼ମାନ ସନ୍ଧି ।
ଏମନ୍ତ ବ୍ୟାଧି ଘୋଟିବ ଯାହାକୁ । ମହା ସନ୍ନିପାତ ବୋଲି ତାହାକୁ ।
ଅନ୍ନ ନ ରୁଚଇ ମନ ବିଭଙ୍ଗ । ଅନୁବରତେ ପୋଡୁଥାଇ ଅଙ୍ଗ ।
କଣ୍ଠ ଅଗ୍ରତେ କମ ମହାତୃଷା । ଲୋକ ନ ଚିହ୍ନଇ କେବଳ ଭାଷା ।
ଏମନ୍ତ ପ୍ରକାରେ ଯେ ବ୍ୟାଧି ହୋଇ । ବୈଦ୍ୟ କି କରିବ ଔଷଧ ଦେଇ ।
ଯେ ଯେତ୍ବେ ବୈଦ୍ୟ ହୋଇକିନା ସାକ୍ଷୀ । ଏମନ୍ତ ମଣୁକୁ ନୁହଇ ରଖି ।
ପାଣ୍ଡୁ ବର୍ଣ୍ଣ ଯେବେ ପାଣି ପ୍ରକାଶି । ସୁବର୍ଣ୍ଣ କଣିକା ପ୍ରାୟେକ ଦିଶି ।
ମଳ ପାଣି ପ୍ରାୟେ ଦିଶିବ ଯେବେ । ଏମନ୍ତ ମଣୁ ନ ବ୍ରତଇ ଭବେ ।
ଆରେକ କଥାଏ କହିବା ଶୁଣ । ବାତ ପିତ୍ତ ବ୍ୟାଧି ଯେମନ୍ତ ଗୁଣ ।
ଅଙ୍ଗରୁ ଏ ବ୍ୟାଧି ହୁଅଇ ଜାତ । ପାଣ୍ଡୁର ବର୍ଣ୍ଣ ଦିଶୁଥାଇ ଛୁତ ।
ତଇଳ ପଡ଼ିଲେ କୂଳ ନ ପାଇ । ଦକ୍ଷିଣ ଦିଗକୁ ଅଳପ ଯାଇ
ଦକ୍ଷିଣେ ଯେବେ ଚାଲଇ ତଇଳ । ଏ ବ୍ୟାଧି କେବେ ହେଁ ନୁହଇ ଭଲ

ଅସାଧ ବ୍ୟାଧି ଏ ଅଟଇ ଜାଣ । ଆବର କଥାଏ କହିବା ଶୁଣ
ଯେବଣ ମୂତରେ ତଇଳ ଦେବ । ଧନୁ ପ୍ରାୟ ହୋଇ ବାଙ୍କିଣ ଯିବ
ନୋହିଲେ ହୋଇବ ଖଡ଼୍ଗ ପ୍ରାୟେ । ବାଡ଼ି ମୋଟ ପ୍ରାୟେ ହୋଇଣ ଯାଏ ।
ନୋହିଲେ ତ୍ରିଶୂଳ ପ୍ରାୟେକ ହୋଇ । ମୂଷଳୀ ଭାବେଣ ଚଳିଣ ଯାଇ
କୀଟ ପୋକ ବାଙ୍କେ ଚଳିଣ ଯାଇ । କାଣ୍ଡଶର ପ୍ରାୟେ ଯେସନ ହୋଇ
ଅସାଧ ବ୍ୟାଧି ଶୁଣ ବୈଦ୍ୟ ଜନେ । ଏ ମନ୍ଦୁ ମରଇ ଅଳପ ଦିନେ
ପାଣିରେ ତୈଳ ଯିବ ଶଙ୍ଖ ଭାବେ । ପଦ୍ମଫୁଲ ପ୍ରାୟ ରହିବ ଯେବେ
ହସ୍ତୀ ଗୋଟା ପ୍ରାୟ ହୋଇ ସ୍ୱଭାବ । ନୋହିଲେ ଅଶ୍ୱର ଆକାରେ ଯିବ
ଏତେ ଲକ୍ଷଣ ଯେ ପ୍ରାଣୀର ଥାଏ । ସେ ମନ୍ଦୁ ମରଇ ନାହିଁ ସଂଶୟେ
ଯେବଣ ପାଣିରେ ତଇଳ ଦେଇ । କଇଁଛ ପରାୟେ ହୋଇଣ ଯାଇ
ନୋହିଲେ ଦିଶଇ ମଣ୍ଡୁକୀ ପ୍ରାୟେ । ନୋହିଲେ ମାଛର ପ୍ରାୟେକ ଯାଏ
ତଇଳ ହୋଇଲେ ଏମନ୍ତ ବର୍ଣ୍ଣ । ସେ ମନ୍ଦୁ ମରଇ ଧ୍ରୁବ ବଚନ
ଯେବଣ ମୂତରେ ତଇଳ ଦେବା । ହସ୍ତୀ ପ୍ରାୟ ହୋଇ ଗମିବ ଅବା(୧)
ନୋହିଲେ ଛତା ଗୋଟି ପ୍ରାୟେ ଭାସେ । ବକ ପୁଚ୍ଛ ପ୍ରାୟ ହୋଇଣ ଦିଶେ ।
ଯୋକମାଳ ପ୍ରାୟ ସ୍ୱରୂପ ଭାବେ । କୁଆଗୋଟା ପ୍ରା ଦିଶିବ ଯେବେ
ଯେଉଁ ମୂତେ ଥିବ ଏମନ୍ତ ଭେଦ । ଦୋଷ ବୋଲି ତାକୁ ବୋଲିବ ବୈଦ୍ୟ
ଏଥକୁ ପୋଡ଼ା ପାଞ୍ଚନ ପ୍ରକାଶ । ବଳିଆର କଲେ ବିହିବ ରସ
ଯେବଣ ପାଣି ନିରିମଳ (୨)ଦିଶି । ଆବର ବହଳ ହୋଇ ପ୍ରକାଶି
ନିଚଳେ ତଇଳ ଚଳଇ ନାହିଁ । ତ୍ରିଦୋଷ ବୋଲିଣ ଏହାକୁ କହି
ଏଥକୁ ପାଞ୍ଚନ ପଥି ସଂଯୋଗ । ଯେମନ୍ତେ ସାଧନ ହୋଇବ ରୋଗ
ଯେବଣ ପାଣି ରକ୍ତବର୍ଣ୍ଣ ଦିଶି । ପିଉରେ ଏମନ୍ତ ଜ୍ୟୋତି ଅଭ୍ୟାସି

---

(୧) ଖ ପୋଥି - ଯେବଣ ମୂତରେ ତଇଳ ଦେବା । ହଂସ ପରି ହୋଇ ରହିବ ଅବା ।
ନୋହିଲେ କ୍ଷେତ୍ର ଗୋଟିଏ ସ୍ୱଭାବେ । ବକ ପରି ହୋଇ ରହିବ ଯେବେ ।
ନୋହିଲେ କପ ସ୍ୱରୂପ ଭାବେ । କାକ ଗୋଟା ପରି ଦିଶିବ ଯେବେ ।
ଯେଉଁ ମୂତେ ଥିବ ଯେତେକ ଭେଦ । ଦୂଷ ବୋଲି ତାକୁ ଜାଣ ହୋ ବୈଦ୍ୟ ।
(୨) ଖ ପୋଥି - ନୀଳବର୍ଣ୍ଣ

ତଇଳ ପଡ଼ିଲେ ତରଳେ ଯାଇ । ସାନ୍ତ୍ୱନା କଲେ ସେ ଏହାକୁ ପାଇ

ସ୍ନାହାନ, ହଳଦୀ, ଯଚ୍ଛ ପଖାଳ । ଏମନ୍ତ ପ୍ରକାରେ ମଳୁକୁ ତାର(୧)

ଯେବଣ ଦିଶଇ ଖଇର ପାଣି । ଦୋଷ ଭେଦ ବୋଲି ଯେହାକୁ ଜାଣି

ତୋରାଣୀ ପ୍ରାୟେ ଦିଶେ ଯେଉଁ ମୂତ । ତଇଳ ଦେଲେ ରହେ ସ୍ତମ୍ଭୀଭୂତ

ଦୋଷ ଭେଦ ବୋଲି ଜାଣିମା ଯେଥି । ଉପାସ କରାଇ ଧରିବା ପଥି

ଦଶମୂଳରେ ଅଳହି ପ୍ରକାଶ । ତହିଁ ନ ଛାଡ଼ିଲେ ଦେବାକ ରସ

ମୂତ ଦିଶିବ ହଳଦିଆ ମହୁ । ତଇଳ ନିଶ୍ଚଳ ହୋଇଣ ରହୁ

ସୁବୁଧି ସାଧୁ ବୈଦ୍ୟ ଜନେ ଶୁଣ । ଏହାକୁ ବୋଲିକି ଆମ ଅଜୀର୍ଣ୍ଣ

ପ୍ରଥମେ ଦେହ କରାଇବ ଭେଦ । ତକ୍ଷଣି (୨)କରାଇ ଦେବ ଔଷଧ

ଯେବଣ ପାଣି ଦିଶେ ବସାଦହି । ତଇଳ ପଡ଼ନ୍ତେ ନିଶ୍ଚଳେ ରହି

ଦୋଷ ସନ୍ନିପାତ ଏ ମହାରୋଗ । ଏଥକୁ ଔଷଧ ପଥି ସଂଯୋଗ

ପାଦେ ଦୋଷ ଥିଲେ ପଥିରେ ଯାଇ । ବେନି ପାଦରେ ଦଶମୂଳ ଖାଇ

ତିନି ପାଦ ଥିଲେ ଅଳହି ଦେବ । ଚାରିପାଦରେ ରସ ବଢ଼ି ନେବ ।

ଏ ବ୍ୟାଧି ସ୍ୱଭାବେ ଅଟଇ ଟାଣ । ଦୋଷ ବୋଲି କି ବୈଦ୍ୟଦାନେ ଜାଣ

ଏହି ବର୍ଣ୍ଣେ ଯେବେ ଦିଶିବ ପାଣି । ଶ୍ୱାସରେ କାଶ କରୁଥିବ ଟାଣି

ବାଡ଼ି ନୁହଇ ପେଟ ମୁଣ୍ଡ ଗରୁ । କିଅବା ନୋହିଲେ ତୃଷା ହିଁ କରୁ

ଭିତରେ ହାଡ଼ କମ୍ପୁଥାଇ ରୋଷେ । ଦିହ ଡାହା ଦିଏ ରାତ୍ର ଦିବସେ

ଏତେ ପ୍ରକାରେ ଯେଉଁ ମଳୁ ହୋଇ । ସେ ମଳୁ କେବେ ହେଁ ସାଧ ନୁହଇ

ଏମନ୍ତ ମଳୁକୁ ଶ୍ରୀହରି ସାଖୀ । ଆଉମାନେ କେହି ନୁହନ୍ତି ରକ୍ଷା

ସେ ପ୍ରଭୁ ଚରାଣେ ନିତ୍ୟ ମୋ ଆଶ । ବୈଦ୍ୟ ସାହାସ୍ର କଲେ କୃଷ୍ଣ ଦାସ ।

## ଚନ୍ଦନାଦି ପାଚନ

ମୂତ ପରୀକ୍ଷା ଏହିଠାରେ ଗଲା । ପାଞ୍ଚନ ମହିମା କହିବା ଭଲା

ଗର୍ଭିଣୀ ସ୍ତିରୀମାନଙ୍କର ଜ୍ୱର । ତହିଁକି ଏମନ୍ତ ଔଷଧ କର

---

(୧) ଖ ପୋଥି - ପାକ (୨) ଖ ପୋଥି - ଚିକିତ୍ସା

ଦିବ୍ୟ ବଚନ ଏ ଅତି ଉପମ । ଏହାକୁ ବୋଲି ଚନ୍ଦନାଦି ନାମ
ମୁଥା ମା୬ଢ଼ ହୋଇବ ଯେତେ । ରକତ ଚନ୍ଦନ କରିବା ତେତେ
ପାପଡ଼ା ମା୬ଢ଼ ତହିଁରେ ଭରି । ପାଟେଳି ମା୬ଢ଼ ଯତନ କରି ।
କଟୁକୀ ମା୬ଢ଼ ଯତନ କରି । ପାଣି ଅଷ୍ଟ ହି ମାଣିକାରେ ଭରି ।
ହାଣ୍ଡିରେ ଭରି ଶିଝାଇବ ନେଇ । ପାଣି ରହିବ ମାଣିକାଏ ତହିଁ ।
ମହୁ ପରୀକ୍ଷ ଯେ ଏଥକୁ କର । ଗର୍ଭିଣୀ ସ୍ତିରୀର ଛାଡ଼ିବ ଜ୍ୱର ।
ଶଳିଷମା ଜ୍ୱର ବିଧିର ଗୁଣ । ତହିଁକି ପାଞ୍ଚନ କହିବା ଶୁଣ
ଯେଉଁ ଦିନ ଅଙ୍ଗେ ଘେନିମ ଜ୍ୱର । ସେ ଦିନ ନିଶିରେ ଉପାସ କର
ଆରଦିନ କର ପାଞ୍ଚନ ବିଧି । ତହିଁକି ଔଷଧ କହିବା ସିଦ୍ଧି
ଅଙ୍କରାନ୍ତି ବୃକ୍ଷ ଆଣିମ ଯାଇ । ଲହ ବ୍ୟାକୁଡ଼ି ଯେ ଗୁଳୁଛି ଦେଇ
ଶୁଣ୍ଠି ଇନ୍ଦ୍ରଯବ ଏ ଚିରାଇତା । ଦୁର୍ଲଭା ରକତ ଚନ୍ଦନ ଚିତା ।
ପୋଟଳପତ୍ର ମୁଥା ସମତୁଲ । ଦ୍ରବ୍ୟ ଯେ ଘେନ ଦୁଇ ଦୁଇ ମାଢ଼
ଅଷ୍ଟାବଶେଷ ଯେ ପାଣିରେ ମାଗି । ପିପ୍ପଳୀ ପରୀକ୍ଷେ ଭକ୍ଷିବା ବେଗି
ଆମ୍ବବାତ ପିତ୍ତ ଏ ଶଳିଷମ । ବାଡ଼ି ପେଟ ବ୍ୟଥା କାଶ ମଧମ ।

## କଣ୍ଟାଧିପାଚନ (କଷ୍ଟାଧି)

କଣ୍ଟାଧି ପାଚନ ନାମ ଓଷଧ । ତିନି ଦିନ କଲେ ହୁଅଇ ସାଦ୍ଧ
ଏକାନ୍ତ ଶଳିଷମା ଜ୍ୱର କଲେ । ତହିଁକି ପାଞ୍ଚନ କହିବା ଭଲେ
ଲହ ବ୍ୟାକୁଡ଼ି, ଅଙ୍କରାନ୍ତି ଘେନି । ଗୁଳୁଚି, ମୁଥା, ଚିରାଇତା ତିନି ।
ଗୋକ୍ଷୁରା ସାଲପର୍ଣ୍ଣି ଆଦିମତେ । ଶୁଣ୍ଠି କୁରୁବେଲି ମୁଥା ସହିତେ
ଦ୍ରବ୍ୟକେ ଘେନିଣ ପନ୍ଦର ଚିନା । ଅଷ୍ଟ ଅବଶେଷ କରିବ କିନା,
ଚିରାଇତା ପାଞ୍ଚନ ଭିଆଣ ଯାହା । ମହୁ ପରି ଯେ ପିଆଇବ ତାହା ।
ବାତ ପିତ୍ତ ଜ୍ୱର ଯେ ଅବା ଥାଇ । ଏତେକ କଲେ ଯେ ସାନ୍ତ୍ୱନା ପାଇ ।

---

ବୁଢ ପରୀକ୍ଷା .... ଠାରୁ ଗର୍ଭିଣୀସ୍ତିରୀର ଛାଡ଼ିବ ଜ୍ୱର ପର୍ଯ୍ୟନ୍ତ ଖ ପୋଥିରେ ନାହିଁ ।

ଏତେକେ ଯିବ ଶଳିଷମା ବ୍ୟାଧି । କେ ହଣସି ମତେ(୧) ନୋହିବାକ ସାଧି
ପୁଣି ହି ଯେବେ ନ ଛାଡ଼ିବ ଜ୍ୱର । ତ୍ରିଫଳା ପାଞ୍ଚନ ଭିଆଣ କର
ନିରନ୍ତରେ ଜ୍ୱର କରଇ ଯେବେ । ଏକାନ୍ତ ଶଳିଷମା ବୋଲିବ ତେବେ
ଅନ୍ତର୍ଗତୁ ଜ୍ୱର ଛାଡ଼ଇ ନାହିଁ । ଦଣ୍ଡକେ ଦେହ ସ୍ତମ୍ଭୀଭୂତ ହୋଇ
ନିରନ୍ତରେ ଦେହ ଗରୁ ପ୍ରକାଶି । ଅଳପ ଶୀତ ଲାଗୁଥାଇ ଆସି
ଅରୁଚି କରି ଦେହ ଢାଳା ଯାଣି । ନାସା ଚକ୍ଷୁରୁ ବହୁଥାଇ ପାଣି ।
ବେନି ଚକ୍ଷୁ ତାର ଗଭୀର ଦିଶି । ଅଳପ ଭାବେ ଆସୁ ଥାଇ କାଶି ।
ଏତେ ବ୍ୟାଧି ଥାଇ ଯେଣେ ଜ୍ୱର । ତାକୁ ବୋଲି ସନ୍ନିପାତ ନିକର
ଏଥିକୁ ପାଞ୍ଚନ ଦିଅ ବିଚାରି । ପ୍ରଥମ ଦିନ ସେ ଉପାସ କରି ।
ସେ ଦେହ ପୁଣି କରାଇବ ଭେଦ । ତହିଁ ଉତାରେଣ ଦେବା ଔଷଧ ।
ପଳାଶ ପତ୍ର ଯେ ତ୍ରିଫଳା ବେନି । ବାସଙ୍ଗ ମୁଳ ଗୁଳୁଚିକି ଘେନି
କଟୁକି ବେଗ ଯେ କର ରଞ୍ଚନା । ଦ୍ରବ୍ୟ କେ ଘେନିମ ପନ୍ଦରଚିନା
ଅଷ୍ଟ ଅବଶେଷ ପାଣିରେ ଭରି । ପିପ୍ପଳୀ ପରାକ୍ଷ ବିଶେଷ କରି
ଏହି ପ୍ରକାରେ ତିନି ଦିନ କର । ତେବେ ସେ ଛାଡ଼ିବ ଶଳିଷମା ଜ୍ୱର
ଦୀନକୃଷ୍ଣ ଦାସ କହୁଛି ଯାହା । ସୁବୁଧି ଜନେ ହେତୁ କର ତାହା ।
ଏକାନ୍ତ ଆମ୍ବ ଜ୍ୱର ହୋଏ ଯେବେ । ତହିଁକି ପାଞ୍ଚନ କହିବା ଏବେ

## ଏକାନ୍ତ ଆମ ଜ୍ୱର , ଏକାନ୍ତ ସନ୍ନିପାତ ଜ୍ୱର

କଟୁକି ମୁଗାମୂଳ ଆଦି ଘେନି । ପଳିତା ପତ୍ର ରକତ ଚନ୍ଦନୀ ।
ଅକାନବିନ୍ଧି ମୂଳ ଆଦି ଭରି । ଗୁଳୁଚି କିହିବ ଯତନ କରି ।
ଆମ ଜ୍ୱରକୁ ଏ ଦିବ୍ୟ ପାଞ୍ଚନ । କରସି ଲେଖାଏ ଏ ଦ୍ରବ୍ୟ ଘେନ ।
ଅଷ୍ଟ ଅବଶେଷ କରି ପିଇବ । ପିପ୍ପଳୀ ପରାକ୍ଷ ମଜୁକୁ ଦେବ ।
ତିନିଦିନ ଏହା ପିଇବ ଯେବେ । ଆମ୍ବଜ୍ୱର ବ୍ୟାଧି ଖଣ୍ଡିବ ତେବେ ।
ଏକାନ୍ତ ସନ୍ନିପାତ ଜ୍ୱର ଗୁଣ । ତହିଁର ମହିମା କହିବା ଶୁଣ ।

---

(୧) ଖ ପୋଥି - କେହୁଣି ପ୍ରକାରେ

ନିରତରେ ଜ୍ୱର ଘେନିଣ ଥାଇ । ଶୀତ ଲାଗୁଥାଏ ଅଳପ ହୋଇ
କପାଳ ସର୍ବାଙ୍ଗ କରଇ ବ୍ୟଥା । ଗଦ ଗଦ କରି କହନ୍ତି କଥା
କ୍ଷଣ କ୍ଷଣକେ ତୃଷ୍ଣ ଯାଇ ଶୁଖି । ରକତ ବର୍ଣ୍ଣ ଦିଶୁଥାଇ ଆଖି ।
ସର୍ବାଙ୍ଗ ବ୍ୟଥା ଘେନି ବେନିକର୍ଣ୍ଣ ମୂଳ । ଦେହରୁ ବାହାର ନୁହଇ ଝାଳ ।
କାଶ ଶ୍ୱାସ ସହ ଅରୁଚି ଆଶା । ମୁଖରେ କହଇ ବିଭଳ ଭାଷା
ମଳ ମୂତ୍ର ତାର ବଡ଼ କଠିଣ । ହେମ ଲାଗୁଥାଇ କର ଚରଣ ।(୧)
ପାଦ ପାଣି ଆଉ ନିବୃତ ନୋହେ । ସର୍ବାଙ୍ଗ ମଥା କଟକଟ ହୋଏ ।
ମଳମୂତ୍ର ଝାଳ କିଛି ହିଁ ନାହିଁ । କ୍ଷଣ କ୍ଷଣ ଯେ ଝାମଯାଉ ଥାଇ
ପେଟ ମୁଣ୍ଡ ଗରୁ ମନ ବିଭଙ୍ଗ । ଅନବରତେ ପୋଡୁଥାଇ ଅଙ୍ଗ ।
ଅରୁଚି ହିଁ ଯେ ଭୋଜନ ନ କରି । ବୁକୁ ବ୍ୟଥା କରି କମ୍ପଇ ଧରି ।
ଏମନ୍ତ ପ୍ରକାରେ କଲେଣ ଜ୍ୱର । ତାହାକୁ ବୋଲି ସନ୍ନିପାତ ଜ୍ୱର ।
ସର୍ବାଙ୍ଗେ ଯେବେ ଏ ଲକ୍ଷଣ ଥାଇ । କେବେହେ ସେ ବ୍ୟାଧି ସାଧି ନୁହଁଇ ।
ଏତେ ଲକ୍ଷଣ ସାତ ପାଞ୍ଚ ଥିଲେ । ସନ୍ନିପାତ ବୋଲି ଯାଣିମ ଭଲେ ।
ଏଥକୁ ଆହୁରି ଉପାସ କରି । ଅଦାଗଣ୍ଡୁସ ଦେବା ଗୋଟି ଚାରି ।
ସେ ଦିନ ମନ୍ତୁ ସେହିମତେ ଥିବ । ନିଶି ପ୍ରଭାତେଣ ଔଷଧ ଦେବ ।
ମନରେ କିଛି ନୋହିବ ବିଭଙ୍ଗ । ପାଞ୍ଚନ ବିହିବ ଚତୁର୍ଦ୍ଦଶାଙ୍ଗ ।
ବେଲ ପାଟେଳି ଫଣ ଫଣା ଭରି । ଗମ୍ଭାରି ମୂଳ ଏ ପଦାର୍ଥ ଚାରି
ଅଗବଥୁ କୃଷ୍ଣ ପର୍ଣ୍ଣି ସହତେ । ସାଳପନ୍ନି ମୂଳ ଆଦି ଯୁଗତେ ॥
ଲହ ବ୍ୟାକୁଳି ଅଙ୍କରାନ୍ତି ଭରି । ଗୋଖୁରା ଶୁଣ୍ଠି, ଚିରାଇତା ତୁରି ।
ଆବର ଗୁଳୁଚି ମୁଥା ହିଁ ଭରି । ଚତୁର୍ଦ୍ଦଶାଙ୍ଗ ଏ ପାଞ୍ଚନ କରି ।
ଯେବଣ ପାଞ୍ଚନ କହିଲି କିନା । ଦ୍ରବ୍ୟକେ ଘେନିମ ପନ୍ଦର ଚିନା
ଅଷ୍ଟ ଅବଶେଷ କରିବା ଭାବ । ପିପ୍ପଳି ପରୀକ୍ଷେ ମନ୍ତୁକୁ ଦେବ ।
ଯେମନ୍ତ କଲେ ସାତ ଦିନ ଯାଏ । ସନ୍ନିପାତ ଜ୍ୱର ହୁଅଇ କ୍ଷୟେ ।
ତହିଁର ଓଷଧ ବିହିଲି ପୁଣି । ଦୀନକୃଷ୍ଣ ଦାସ ଔଷଧ ଭଣି ।(୨)

---

(୧) ଖ ପୋଥି - ଜିଭ ଶୁଖିଣ ଖଙ୍କାର କଠିଣ । ହେମ ଖରା ଲାଗେ କର ଚରଣ ।
(୨) ଖ ପୋଥି - ସାହାସ୍ତ୍ର ବିଧି ଏ କହିଲି ଆଣି । ଦୀନକୃଷ୍ଣ ଦାସ ଔଷଧ ଭଣି ।

# ଜୀର୍ଣ୍ଣ ଜ୍ୱରକୁ ପାଞ୍ଚନ

ଜୀର୍ଣ୍ଣଜ୍ୱର ଯେବେ କରି ଯାଣ । ତହିଁକି ଓଷଧ କହିବା ଶୁଣ
ପୁରୁଣା ଗୁଡ଼ ଦୁଇପଲ କରି । ପିପ୍ପଳି ସେରେ ଚୂରିଣ ଭରି ।
ଦୁଇ ଏକତ୍ର କରି ଥୋଇଥିବ । ମାଢ଼େ ଲେଖାଏଁ ପ୍ରଭାତେ ଖାଇବ ।
ତହିଁ ଉତାରେଣ ତବତ ପାଣି । ଚଇଳେ ପିଇବ(୧) ଗର୍ଭକୁ ଆଣି ।
ଗୁଡ଼ାଦି ବୋଲିଣ ଏ ଦିବ୍ୟ ରସ । ମନ୍ଦାଗ୍ନି ଜ୍ୱର କରଇ ନାଶ ।
କାଶ ଅରୁଚି ତୃଷା ଆଦି ଥିଲେ । ସାନ୍ତ୍ୱନା ପାଇବ ଏତେକ କଲେ ।
ଏ ବ୍ୟାଧି ଗୋଟିକି ଜିଣି ପାରିଲେ । ଦୀନକୃଷ୍ଣ ଦାସ ଧନ୍ୟନ୍ତ୍ରୀ ବୋଲେ ।

# ଜ୍ୱର ଅତିସାରକୁ

ଜ୍ୱର ଅତିସାର ଯେବଣ ରୋଗ । ତହିଁକି ବିହିବା ଓଷଧ ଭାଗ ।
ସୁଣ୍ଠି ଇନ୍ଦ୍ରଯବ ଅତୋସି ଘେନି । ମୁଥା, ବେଲଶୁଣ୍ଠି, ଗୁଳୁଚି ତିନି ।
ଅଷ୍ଟାଦି ପାଞ୍ଚନ କହିଲି କିନା । ଦ୍ରବ୍ୟ କେ ଘେନିମ ପନ୍ଦର ଚିନା ।
ପାଣି ପାଞ୍ଚ ମାଣ ମାପିବା ସଞ୍ଚ । ପରୀକ୍ଷ ଅତୋସି ଏ ଚିନା ପାଞ୍ଚ ।
ଏହି ପ୍ରକାରେ ସପତାଏ କଲେ । ଜ୍ୱର ଅତିସାର ଛାଡ଼ଇ ଭଲେ ।(୨)
ଆବର କଥାଏ କହିବା ଶୁଣ । ବାତ ଶଳିଷମା ବ୍ୟାଧିର ଗୁଣ ।
ବେଳ ବୁଢ଼େ ଜ୍ୱର ଘେନଇ ଗାଢ଼େ । ନିଶି ନ ପାଉଁଶ ତ କାଳେ ଛାଡ଼େ ।
ଝର ଝର ହୋଇ ବହିବ ଝାଳ । ସର୍ବାଙ୍ଗ ବଥାଇ ସିର କପାଳ ।
ବାତ ଶଳିଷମା ଜ୍ୱର ପ୍ରକୃତି । ହୃଦୟ ଭାଗ ପୋଡୁଥାଇ ନିତି ।
ଏମନ୍ତ ବ୍ୟାଧିକି ଓଷଧ କରି । ଧଣିଆ ମୁଥା ବେଲ ପତ୍ର ଭରି ।
ଲହବ୍ୟାକୁଡ଼ି ଯେଉଁ ତାଳମୂଳ । ପଳତା ପତ୍ର ଆବର ତ୍ରିଫଳ ।

---

(୧) ଖ ପୋଥି - କ୍ଷେପିବ
(୨) ଖ ପୋଥିରେ ଅଧିକ - ପଥ୍ୟ କରିବ ଯେ ଚପଚ ଭାତ । ତହିଁକି ବ୍ୟଞ୍ଜନ ପିଚା ସାଜାତ ।

ମାଢ଼େ ଲେଖାଏଁ ତିନିଠାରୁ ଆଣି । ଅଷ୍ଟ ଅବଶେଷ କରିବ ପାଣି ।
ଏ ରୂପେ ପାଞ୍ଚନ କରିବ ଯେହୁ । ଏଥକୁ ପରୀକ୍ଷ ପିପ୍ପଳି ମହୁ ।
ଏହି ପ୍ରକାରେ ତିନିଦିନ ଦେବ । ଏଥକୁ ଯେମନ୍ତ ପଥ୍ୟ ବିହିବ ।
ଶାଗ ଆମ୍ବିଳ ବିବର୍ଜିତ ଜାଣ । ଖସିକିରା ମାଛ କଳା ବାଇଗଣ
ଏହି ପ୍ରକାରେ ତିନିଦିନ କର । କହେ କୃଷ୍ଣଦାସ ଖଣ୍ଡିବ ଜ୍ୱର ।

---

ଖ ପୋଥି ରେ ଅଧିକ

## ଏକାନ୍ତ ପିତ୍ତଜ୍ୱରକୁ ଔଷଧ

ଏକାନ୍ତ ପିତ୍ତଜ୍ୱର ହୁଏ ଯେବେ । ଚହିଁକି ଔଷଧ କହିବା ଏବେ
ଲହ ବ୍ୟାକୁଡ଼ି ଯେ ବାସଙ୍ଗମୂଳ । ବାଡ଼ିଅଁଳା ଲିମ୍ବପତ୍ରର ଠୁଳ ।
ଦ୍ରବ୍ୟ କେ ବେନି ମାଢ଼ ତୋଳି ଆଣି । ଅଷ୍ଟ ଅବଶେଷ କରିବ ପାଣି ।
ଖଣ୍ଡ ମହୁ ଚହିଁ ପରୀକ୍ଷ ଦେଇ । ଆଦି ପାଞ୍ଚନ ବୋଲି ଏହାକୁ କହି ।
ପିତ୍ତ ଜ୍ୱରକୁ ଏ ଔଷଧ ଦଣ୍ଡେ । ଅରୁଚି ତୃଷା ଦୁଇ ଆଦି [illegible] ।
ଧନ୍ୱନ୍ତ୍ରି କହିଲେ ଶୁଣ ହୋ ବୈଦ୍ୟ । କୃଷ୍ଣଦାସ କହେ ବ୍ୟାଧି କି ଖେଦ ।

## ମନ୍ଦାଗ୍ନି ଜ୍ୱରକୁ ହିଙ୍ଗୁଆ ଅଷ୍ଟକ

ଆବର କଥାଏ କହିବା ଶୁଣ । ହିଙ୍ଗୁଆ ଅଷ୍ଟକ ଔଷଧ ଗୁଣ ।
ଶୁଣ୍ଠି ପିପ୍ପଳୀ ଯେ ସୈନ୍ଧବ ପୁଣି । ମରିଚ କଳାଜିରା ଯାକୁ ପୁଣି ।
ଅଯମୁନାହିଙ୍ଗୁ ସଚେ ମାଢ଼ କରି । ହିଙ୍ଗୁଆ ଅଷ୍ଟକ ନାମ ଏହାରି ।
ମନ୍ଦ ଅଗ୍ନି ଜ୍ୱର ଆମ୍ବ ଯୁଗଚେ । ପେଟ ବ୍ୟଥା ପେଟ ଫୁଲା ସହିତେ ।
ଅଜୀର୍ଣ୍ଣ ସହିତେ ନ ରହେ କେହି । ହିଙ୍ଗୁଆ ଅଷ୍ଟକ ଏତେ ଖଣ୍ଡଇ ।

## ଅଷ୍ଟାଙ୍ଗ ଅଲୁହି ନାନା ଜ୍ୱରକୁ

ଅଷ୍ଟାଙ୍ଗ ଅଳୁହି ଯେଉଁ ପ୍ରମାଣ । ଚହିଁର ମହିମା କହିବା ଶୁଣ ।
ଶୁଣ୍ଠି ପିପ୍ପଳୀ ଯେ ମରିଚ କୁଡ଼ । କଙ୍କଡ଼ା ସୁରଙ୍ଗି କାଙ୍ଗଡ଼ ଯଡ଼ ।
ଦୁର୍ଲଭା କଳାଜିରା ଆଦି ଭରି । ଏତେ ପଦାର୍ଥ ସମକରି ଚୁରି ।
ମହୁ ପରୀକ୍ଷେ ଅବଲେହ କର । ଏହା ଦେଲେ ଖଣ୍ଡେ ନାନାଦି ଜ୍ୱର ।
ଆମ ଶଳିଷମା ଦୂଷର କଥା । ହୃଦୟ ଗରୁ ପେଟ ମୁଣ୍ଡ ବଥା ।
କର୍ଣ୍ଣ ମୂଳିକା ସନ୍ନିପାତ ଦୂଷ । ସମସ୍ତ [illegible] ।

## ପିତ୍ତ ଅଜୀର୍ଣ୍ଣ ଜ୍ୱର

ପିତ୍ତ ଅଜୀର୍ଣ୍ଣ ଜ୍ୱର ଯେବେ ହୋଇ । ତହିଁକି ଔଷଧ ଦେବା କହି ।
ଅନ୍ତରେ ଜ୍ୱର ଲାଗୁଥାଇ ଶୀତ । ଭୋଜନ ବେଳେ ନ ରୁଚଇ ଭାତ ।
ଯଦିହିଁ ଭୁଞ୍ଜିବ ନୁହଇ ଜୀର୍ଣ୍ଣ । ଦିନକୁ ଦିନ ଦେହ ହୋଏ ଖର୍ନ୍ନ ।
ଗରଳୁ ଥାଇ ଯେହ୍ନେ ଘଡ଼ ଘଡ଼ । ଫରଚା ହୋଇ ନ ଛାଡ଼ଇ ବାଡ଼ ।
ବେଳ ବୁଢ଼େ ବ୍ୟାଧି ଘେନଇ ଜ୍ୱର । ଏହାକୁ ବୋଲିକି ଅଜୀର୍ଣ୍ଣ ଜ୍ୱର ।
ଏଥକୁ ପାଞ୍ଚନ କହିବା ଜାଣ । ପାଚଲା ଲିମ୍ବପତ୍ର ତୋଳିଆଣ ।
ତ୍ରିଫଳା ଧନିଆ ପଳତା ପତ୍ର । ଯୁଗତ ।
ବ୍ୟାଧିର ଉଦ୍‌ଯୋଗେ ଏହା ଦେଖି । ପାଞ୍ଚ ମାଢ଼ ଘେନ ଦ୍ରବ୍ୟକେ ଲେଖି
ଅଷ୍ଟ ଅବଶେଷ ପାଣିରେ ଭାଗ । ପିପ୍ପଳି ପରୀକ୍ଷେ ପିଇବ ବେଗ ।
ସପତାଏ ଏହା ଖାଇବ ଯେବେ । ପିତଜୀର୍ଣ୍ଣ ଜ୍ୱର ଖଣ୍ଡିବ ତେବେ ।

## ପ୍ରତାପ ମାର୍ତ୍ତଣ୍ଡ ରସ

ପ୍ରତାପ ମାରତଣ୍ଡ ରସର ଗୁଣ । ସୁବୁଧି ସାଧୁ ବଦ୍ୟ ଯନେ ଶୁଣ ।
ଗରଳ ମାଢ଼େକ ଘେନିମ ହେଜ । ମହୁରାଦି ମାଢ଼ ତହିଁରେ ବେଗି ।
ଜେପାଳ ଛ ମାଢ଼ ଟାଙ୍ଗଣା ଚାରି । ହିଙ୍ଗୁଳ ଆଠମାଢ଼ ତହିଁ ଭରି ।
ଅଦାରସ କିଛୁ ମିଶାଇଦେବୁ । ଜମ୍ବିଳ ରସେ ମର୍ଦ୍ଦନ କରିବୁ ।
ଯମ୍ବିଳ ରସ ନ ପାଇବୁ ଯେବେ । ଶୁଣ୍ଠି ପାଣି ଦେଇ ଖଳିବୁ ତେବେ
ଚଣାସମ କରି ବାନ୍ଧିବୁ ବଢ଼ଇ । ସିତଳାରେ ସବୁଥିବୁ ସଂଯାଡ଼ି ।
ଏଥିରୁ ମାତ୍ରାଏ ଖାଇଲେ ବଢ଼ି । ନାନାଦି ବ୍ୟାଧିମାନ ଯାଇ ଛାଡ଼ି ।
ପଥିହିଁ ସଂଯୋଗ ମନରେ ହେଜ । ଶାଗ ଆମ୍ବିଳ ଯେ ଆମିଷ ତେଜ ।

# ବୈଲୋଚନ ରସ

ଆବରକଥାଏ ଶୁଣ ଉପାମ । ସୁବୁଧି ସାଧୁ ବଦ୍ୟଜନେ ଶୁଣ ।
ଯେବଣ ପ୍ରକାରେ ହୋଇବ ଭଯ୍ୟ । ତାହା କହି ଦେବା ମନରେ ହେଯ ।
ଶୋଧନ ଭସ୍ମ ଚାରିଭାଗକ ରସି । ସୁବର୍ଣ୍ଣ ଭସ୍ମ ଭାଗେ ତହିଁ ମିଶି ।
ଶୋଧନ ଲୁହା ପଲେ ତହିଁମାନ । ଟାଙ୍ଗଣା ଭାଗେ ତହିଁକି ଘେନ ।
ଚିରେ ଦୋରୁଅ ଭିଆଇଲେ ଭଲ । ନୋହିଲେ ଅରଖ ରସରେ ଖଲ ।
ଶଙ୍ଖ ଚୂର୍ଣ୍ଣ ମାଢ଼େ ଭିତରେ ଲାଇ । ଖରାରେ ତାହା ଶୁଖାଇବ ନେଇ ।
ଶୁଖିଲେ ସେ ମୁହଁ ହାଣ୍ଡିରେ ଭର । ଗଜପୁଟରେ ତତପର କରେ ।
ହାଣ୍ଡି ମୁହଁରେ ଯେ ପିହାଣ ଭରି । ଢାଳ ଦେଉଥିବ ଅଳପ କରି ।
ସମଭାଗେ ଯେବେ ହୋଇବ ପାଗ । ତଳରେ ଓହ୍ଲାଇ ଥୋଇବ ବେଗ ।
ବଇଲୋଚନ ଏ ଅପୂର୍ବ ରସ । ପିତ୍ତଳି ପରିକ୍ଷ ହରିବ ଦୋଷ ।(୧)

# ଘୋଡ଼ା ଚୁଡ଼ି ରସ

ଘୋଡ଼ା ଚୁଡ଼ି ରସ କେମନ୍ତ ଗୁଣ । ସୁବୁଧି ସାଧୁ ବଦ୍ୟମାନେ ଶୁଣ ।
ରସବିସ ଗନ୍ଧ ଏ ହରିତାଳ । ତିକଟୁକ ଟାଙ୍ଗଣା ତ୍ରିଫଳା ଖାର ।
ଭୃଙ୍ଗରାଜ ଦୋରୁଅରେ ବାନ୍ଧିବ ବଡ଼ି । ଚଉଷଠୀ ରୋଗ ହରଇ ଘୋଡ଼ାଚୂଡ଼ି
ଗନ୍ଧକ ମହୁରା ପାରୁଆ ରସ । ହରିତାଳ ଟାଙ୍ଗଣା, ତ୍ରିଫଳା ତ୍ରିକଟୁକ ପିସ
କନକା ତିନିମାତ୍ର ତହିଁରେ ଭରି । ଭୃଙ୍ଗରାଜ ରସରେ ମର୍ଦ୍ଦନ କରି ।
ଚଣା ଗୋଟି ଭାବ ଯେବଣ ମତେ । ଏ ବଡ଼ି ବାନ୍ଧିବ ସେହି ଯୁଗତେ ।
ଖରାରେ ନେଇ ଶୁଖାଇବ ଆଣ୍ଟେ । ଯତନ କରି ଥୋଇବ କରାତେ ।
ଯେଉଁ ଲୋକର ମଳମୂତ୍ର ନୋହେ । ପେଟ ଫୁଲାଇଣ ଅଜିର୍ଣ୍ଣ ହୋଏ ।

---

(୧) ଖ ପୋଥିରେ ଅଧିକ

ଏ ବଡ଼ି ଦେଇଣ ନୁହ ବିରସ । ଏହା କହିଲେ ଦୀନକୃଷ୍ଣ ଦାସ ।

ଅଦାରସେ ତାକୁ ଦେବ ଏ ବଡ଼ି । ଭେଦ ହୋଇବ ଯେ ପ୍ରକୃତି ଛାଡ଼ି
ଅଳ୍ପ ପଥି ତାକୁ ନ ଦେବ ଆଉ । ଖଇ, ଚୂଡ଼ା, ଚାଉଳ କରିବ ଯାଉ
ଯେଉଁ ଲୋକ ପେଟରେ ପିଳୋହି ଥାଇ । ଗୋମୂତ୍ରେ ତାହାକୁ ଏ ବଡ଼ି ଦେଇ ।
ଚିନିଗୁଡ଼ ତହିଁ ପରୀକ୍ଷ ଦେବ । ଗୁଆ ପ୍ରମାଣେ ବଡ଼ି ବାନ୍ଧିଥିବ ।
ଚଉଦ ଦିବସ ଖାଇବ ଯେବେ । ପିଳୋହି ବ୍ୟାଧି ଭଲ ହୋଇବ ତେବେ ।
ଏଥକୁ ପଥି ଯେ ତବତ ଭାତ । ବେଞ୍ଜନ କରିବ ପିତା ସଂଯାତ ।
ଅଳପ ଜ୍ୱରକୁ ଶୁଣ୍ଠିରେ ଦେଇ । ଯେତେବେଳେ ଦେହ ଶଉଚ ହୋଇ
ବଡ଼ି ଭଣରେ କହିବା ବାରଣ । ପଥି କରିବ ଧନିଆ ପାଞ୍ଚନ ।
ବାତଜ୍ୱର ଯେବେ ମୁଣ୍ଡରେ ଥାଇ । ତୁଣ୍ଡରେ ପାଣି ଯେ ବହୁତ ଥାଇ
ତେମନ୍ତ ମଲ୍ଲକୁ ଏହି ବଟିକା । ତପତ ପାଣିରେ ଖଳିବ ଏକା
ପିପ୍ପଳି ପାଞ୍ଚ ଚିନା ତହିଁରେ ଭରି । ପାଞ୍ଚନ ବିହିବ ଯତନ କରି ।
ତହିଁକି ପଥି କହିବାକ ବୋଧ । ତପତ ଭାତକୁ ତପତ ଦୁଧ ।
ଶାଗ ଆମ୍ବିଳ ବିବର୍ଜିତ ବିଧି । ଏତେ ବାତ ଜ୍ୱର ହୋଇବ ସାଧି ।
ଯେବଣ ଲୋକର ବଥାଇ ପେଟ । ଆମ୍ବ ଗୁଳ୍ମ ଯେ ନାନା ଉତ୍କଟ ।
ଏଥିର ସଙ୍ଗତେ ମରିଚ ଫଳି । ତପତ ପାଣି ମନ୍ଦାକରେ ଗୋଳି
ଦଶ ଦିନ ଯେବେ ଖାଇବ ବଡ଼ି । ଆମ୍ବ ଗୁଳ୍ମ ବ୍ୟାଧି ଯିବ ଛାଡ଼ି ।
ଏକାନ୍ତରେ ଯେବେ ପେଟ ବଥାଇ । ମରିତ ସଙ୍ଗତେ ଏ ରସ ଖାଇ
ମନ୍ଦ ଅଗ୍ନିଂ ଜ୍ୱର କରଇ ଯାକୁ । ପାନ ସଙ୍ଗତେ ଖୁଆଇବ ତାକୁ
ଯେଉଁ ଲୋକକୁ କରୁଥାଇ କାଶ । ତାହାକୁ ଏବଣ ବିହିବ ରସ
କେସରଦା ଗଛ ପତର ଆଣି । ମରିଚ ସାତ ଗୋଟା ଦେବ ଗଣି,
ବଡ଼ି ମାତରାଏ ତହିଁରେ ଭରି । ଚୋବାଇ ଖାଇବ ଯତନ କରି ।
ନିରାମିଷ ପଥି ତବତ ଭାତ । ଯେଉଁବାଗେ ବ୍ୟାଧି ହୋଇବ ହତ ।
ଆମ୍ବ ବାତ ବ୍ୟାଧି ଯାହାକୁ ଯଡ଼ି । ବେଗୁନିଆ ରସେ ଦେବ ଏ ବଡ଼ି ।
ପେଟଫୁଲାକୁ ପିପ୍ପଳିରେ ଦେବ । ମରିଚ ସାତଗୋଟା ତହିଁ ଥିବ ।
ଶୁଣ୍ଠି ଚିନାକେ ମାତର ଏ ରସ । ଯେଉଁ ରୂପେ ବ୍ୟାଧି ହୋଇବ ନାଶ

ଧନିଆ ଭରିଣ ପରୀକ୍ଷ ଶୁଣ୍ଠି । ପଥ୍ କିସ ଯୋଗ ଏମନ୍ତ ସେଟି ।
ଘୋଡ଼ା ଚୋଡ଼ୀ ରସ ଏମନ୍ତ ଗୁଣ । କୃଷ୍ଣଦାସ କହେ ସୁଜନେ ଶୁଣ ।

## ଚନ୍ଦ୍ର ଉଦେ ଅଞ୍ଜନ

ଶୁଣ ସୁବୁଧି ସାଧୁ ବଦ୍ୟଜନ । ଚକ୍ଷୁକୁ ଅଞ୍ଜନ କହିବା ଶୁଣ ।
ହରିତକ ମଞ୍ଜି ମାଢ଼େ ନିର୍ମାଣି । ବାହାଡ଼ା ମଞ୍ଜି ସମ ମାଢ଼େ ଆଣି
ମଣିସିଳକୁ ମାଢ଼େ ତହିଁ ଭରି । ତିନି ଔଷଧ ସମଭାଗ କରି ।
ଶିଳରେ ଚୂରି ଛାଣି(୧) କରି ଥୋଇ । ଛାଗଳ ଦୁଧରେ ଖଳିବ ନେଇ
ଖରାରେ ଶୁଖାଇ ବାନ୍ଧିବ ବଡ଼ି । ଯେଉଁ ଚକ୍ଷୁରେ ପ୍ରଳ ଥିବ ପଡ଼ି
ମହୁ ପରୀକ୍ଷେ ଯେ ଏ ବଡ଼ି ଖଳ । ଲୋଚନେ ରଞ୍ଜିଲେ ହୋଇବ ଭଲ ।
ଲେଞ୍ଜରା ଚକ୍ଷୁ ହୋଇଥିବ ଯାର । ପାଣିରେ ଖଳିବ ଏ ବଡ଼ି ସର
କଜ୍ଜଳ ପ୍ରାୟେ କରି ଯେବେ ଘେନି । ନିର୍ମଳ ହେଇବ ଲୋଚନ ବେନି
ଚନ୍ଦ୍ର ଉଦେ ବଡ଼ି ଏ ଦିବ୍ୟ ରସ । ଔଷଧ ଭଣେ ଦୀନକୃଷ୍ଣ ଦାସ ।

## ତେର ସନ୍ନିପାତକୁ

ସୁବୁଧି ସାଧୁ ବଦ୍ୟମାନେ ଶୁଣ । ତେର ସନ୍ନିପାତ କହିବା ଗୁଣ
ଅନ୍ତିକା ଦନ୍ତିକା କଣ୍ଠ କୁବୁଜ । ଜିଭ୍ୟା କର୍ଣ୍ଣମୂଳ ସହିତେ ହେଳ ।
ଗୁରୁତେଳ ଦାରାକ୍ଷ ସନ୍ଧିକ ନାମ । ସିତାଙ୍ଗ ସନ୍ନିପାତ ଚିତ୍ତଭ୍ରମ ।
ଭଗ୍ନନେତ୍ର ଅଭିମାନକୁ ଭରି । ପ୍ରଳାପ କରନ୍ତି ତିଷ୍ଣା ଆଦି କରି ।
କୁମ୍ଭିଣା(୨) ସନ୍ନିପାତ ତହିଁକି ଲାଗ । ଏତେ ସନ୍ନିପାତ ଦେହକୁ ରୋଗ ।
ଏଥି ଭିତରେ ଅଛି ଭଲ ମନ୍ଦ । ଶୁଣ ବଦ୍ୟଜନେ ଫେଡ଼ିବା ଧନ୍ଦ ।
ଅନ୍ତିକା ଦନ୍ତିକା ଭ୍ରମଣି ଚିତ । ସାଧ ନୁହନ୍ତି ଏତେ ସନ୍ନିପାତ ।
କଣ୍ଠ କୁବୁଜ ସନ୍ନିପାତ ଯେହୁ । ଅତି କଷ୍ଟରେ ସାଧ ହୋଇ ସେହୁ

(୧) ଖ ପୋଥି - ସମ (୨) ଖ ପୋଥି - କୁମ୍ଭନି

ଗୁରୁଦାହି ସନ୍ନିପାତକୁ ତରି । ଏ ବ୍ୟାଧି କଲେ ମନୁ ଯାଇ ମରି ।
ଅଙ୍ଗକଷଣ ମତିଭ୍ରମ ହୋଏ । ମୁଖ ଦିଶଇ ହଳଦିଆ ମଧ୍ୟେ ।
ନାସାରେ ପବନ ବହଇ ହେଳୁ । ଅବଶ୍ୟ ମରଇ ଏମନ୍ତ ମନୁ ।
ହରିବିନ୍ଧା କାମି ସମତୁଲ ଧରି । ନାଗବହନୀ ଦେଇ ଯାର କରି
ଦଶଗୁଣେ ଲାଞ୍ଜ ବୁଲାଇ ଯେବେ । ସିଦ୍ଧରସମୁଦ୍ର କହିଲେ ତେବେ ।
ଘୃତ ମହୁ ସୀକର ସଙ୍ଗତେ ରଞ୍ଜି । ସୋରିଷ ପ୍ରମାଣେ ଅଦାରସେ ଭୁଞ୍ଜି
ମୂତ୍ର ଜାଣି ଯେବେ ଧାନେକ ଦେସି । ମଲାର ଜୀବନ ତେବେ ନେଉଟି ଆସି ।

## ରସରାଜରସ

ଏ ରସ କଥା ଏ ପ୍ରତି ବିଧାନ । କହିବା ଶୁଣ ବଦ୍ୟଜନମାନ ।
ରସ ମହୁରା ଦୁଇମାଢ଼େ ଭରି । କାସିମିରା ଗନ୍ଧେକ ମାଢ଼େକ କରି ।
ନାଗ ଯେ ତମ୍ବା ତହୁଁ ମାଢ଼େ ଭର । ଚିତାମୂଳକୁ ମା୧ଢ଼େକ ଭର ।
ଲାଙ୍ଗୁଡ଼ ଯେତେ ଜନ୍ତୁଙ୍କର ଥାଇ । ତାହାଙ୍କ ପିତକୁ ମାଢ଼େକ ଲାଇ ।
ଘୃତ ଯେ ଘିଅ ତହୁଁ ମାଢ଼େ କର । ମହୁରା ମାଢ଼େକ ତହିଁରେ ଭର ।
ସବୁପଦାର୍ଥ ସମଭାଗ କରି । ମହୁରା ମାଢ଼େକ ତହିଁରେ ଭର ।
ଫେଡ଼ି କହୁଅଛି ଊଷଧ ଧନ୍ଧି । ଏ ରସ ସୋରିଷ ସମାନେ ବାନ୍ଧି ।
ବାନ୍ଧିବ ଅଦାରସ ଘେନି ବଡ଼ି । ସନ୍ନିପାତ ଯିବ ଦେହରୁ ଛାଡ଼ି ।
ବଳିଆର ଯେବେ ଦେଖିବ ରୋଗ । ଧାନେ ପ୍ରକାଣେ ସେ କରିବ ଯୋଗ ।
ଏ ବଡ଼ି ନାମ ରସରାଜ ହୋଇ । ସ୍ୱର୍ଗରୁ ଅଶ୍ୱିନୀ କୁମାର କହି ।

## ଚିନ୍ତାମଣି ରସ (୧)

ଏଥୁ ଉତାରେଣ କହିବା ଯିସ । ଚିନ୍ତାମଣି ନାମ ଏ ବଡ଼ଇ ରସ
ରସ ଗନ୍ଧକ ଅଭ୍ର ହରିତାଳ । ସାଚି ସଉଚ ଯେ ଟାଙ୍ଗଣା ଖାର ।

(୧) ଖ ପୋଥିରେ ଚିନ୍ତାମଣି ରସ ନାହିଁ ।

ପାଞ୍ଚରସ ଦେଇ ଆମ୍ବିଳ ଭର । ସକଳ ବ୍ୟାଧି ଚିନ୍ତାମଣି ହର ।
କାଶଶ୍ୱାସ ଆସି ସକଳ ଯାଇ । ମଳୁ ନ ଯାଣଇ କେମନ୍ତେ ଖାଇ ।
ଅରୁଚି ରାଚଇ ଭୋଜନେ ସୁଖ । ଦୋଷ ସନ୍ନିପାତ ହରଇ ଦୁଃଖ ।
ଚକ୍ଷୁ ମୁଖ ରୋଗ ନାକ ଆର ଯିସ । ମୂଳକୁ ହରଇ ଏ ଦିବ୍ୟ ରସ ।
ଏ ରସ ଯେଉଁ ଭାଗେ ବନ୍ଧା ହୋଇ । ତହିଁକି ଔଷଧ ଦେବାକ କହି ।
ରସ ମହୁରା ଯେ ଗନ୍ଧକ ତିନି । ହରିତାଳ ରସ ତୃଣକୁ ଘେନି ।
ସଉଚ, ଟାଙ୍ଗଣା ଓ ବିଟଲୁଣ । ଭୋଟ ସାବଳୀ ଯେ ସକଳ ପୁଣ ।
ଲୁଣରେ ହୋଇବ ଏ ଚାରିପଦ । ମାଢ଼େ ମାଢ଼େ ଘେନ ସବୁ ଔଷଧ ।
ଜମ୍ବିର ରସରେ ମର୍ଦ୍ଦନ କରି । ଏ ବଡ଼ି ବାନ୍ଧିବ ଯେସନେ ବିରି ।
କାଶ, ଶ୍ୱାସ ଆଦି ସକଳ ନାଶେ । ଅଗ୍ନିଜାତ ହୋଇ କ୍ଷୁଧା ହିଁ ବସେ ।
ବାସଙ୍ଗ ବକଳ ବାଟିଣ ଭରି । ଏ ବଡ଼ି ନେବ ଅନୁପାନ କରି ।

## ଅନନ୍ତ ସମୁଦ୍ର ରସ

ଆବର ଔଷଧ ଶୁଣ ଉପାମ । ଅନନ୍ତ ସମୁଦ୍ର ରସ ନାମ ।
ରସକୁ ଭାଗେ ଗନ୍ଧକକୁ ଭାଗେ । ହରିତାଳ ଭାଗେ ତହିଁରେ ଲାଗେ ।(୧)
ହେଙ୍ଗୁଳ ମଣି ସିଳସମ କରି । ତୁତିଆ ମିଶା ଖପରକୁ ଭରି ।
ବଙ୍ଗ ଭସ୍ମ ଲୋହ ଭସ୍ମ ଆବର । ରୂପା ଭସ୍ମ ମୂଳେ ରସ ସିନ୍ଦୂର ।
ଟାଙ୍ଗଣା ଭାଗେ ଶିଳାଜତୁ ଦୁଇ । ସୁବର୍ଣ୍ଣ ଭସ୍ମକୁ ଭାଗେକ ଲାଇ ।
ରସାଞ୍ଜନ ତହିଁ ଭିତରେ ଭର । ଏତେ ଦ୍ରବ୍ୟକୁ ଭାଗେ ଭାଗେ କର ।
ଦାରୁ ବାରଭାଗ ପ୍ରବାଳ ଷୋଳ । ଆଠଭାଗ ତହିଁ ମହୁରା ଗୋଳ
ମାଛପିତ ଭାଗେ ମିଶାଅ ଏକ । ମଗର ପିତ୍ତକୁ ଭାଗେକ ଭର ।(୨)

---

(୧) ଖ ପୋଥି - ରସକୁ ଭାଗେ ହରିତାଳ ଭାଗେ । ହିଙ୍ଗୁଳ ମଣିଶିଳ ଭାଗେ ଭାଗେ
ତୁତିଆ ମିଶା ଖପରକୁ ଭରି । ଏତେ ଔଷଧ ସମକଛ କରି ।
(୨) ଖ ପୋଥି - ମଇଁଷି ପିତ୍ତକୁ ଭାଗେ ତହିଁକି । ମୟୂର ପିତ୍ତକୁ ଭାଗେକ ଲେଖି ।
କୁମ୍ଭୀର ପିତ୍ତ ବୋଦାପିତ୍ତ ବେନି । ଏତେ ପିତ୍ତକୁ ଭାଗେ ଭାଗେ ଘେନି ।

କୁମ୍ଭାଟୁଆ ପିତ ବୋଦା ପିତ ବେନି । ନାନା ପିତରୁ ଭାଗେ ଘେନି ।
ଏହାସବୁ ଏକ କରି ଘାଣ୍ଟିବ । ପଞ୍ଚୁକୁଳ ପାଣି ତହିଁ ବାଟିବ ।
କୃଷ୍ଣ ତୁଳସୀରୁ ଦୋରୁଅ ଆଣିବ । ଚିରାଇତା ଦୋରୁଅ ଖଳିବ ପୁଣି ।
ପାନ ରସ ଅଦାରସ ପ୍ରକାରେ । ପୁଣି ଖଳିବ ବେଙ୍ଗୁନିଆ ଦୋରୁଅରେ ।
ଇହ ଲାଙ୍ଗୁଳିଆ ଦୋରୁଅ ଆଣି । ତହିଁରେ ପହରେ ଖଳିବ ପୁଣି ।
ଏଥକୁ ସଂଶୟେ ଫେଡ଼ିବା ଧନ୍ଦି । ସୋରିଷ ପ୍ରମାଣେ ଏ ବଡ଼ି ବାନ୍ଧି ।
ବ୍ୟାଧି ଅନୁକର୍ମେ ମନୁକୁ ଦେବ । ବୁଝିମଣି ସ୍ୱାନ୍ତି କରୁଣ ଥିବ ।
ଅନନ୍ତ ସମୁଦ୍ର ଏ ନାମ ରସ । ସକଳ ବ୍ୟାଧିକି କରଇ ନାଶ ।
ବିଚିତ୍ରବାଡ଼ି ହୋଇଥିବ ଯାକୁ । ପଇଡ଼ ପାଣିରେ ଦେବ ତାହାକୁ ।
ପଇଡ଼ ପାଣି ନ ମିଳିବ ଯେବେ । ଥିରି ତୋଡ଼ାଣିରେ ଦେବାକ ତେବେ ।
ପିତ ଶଳିଷମା ଯା ଦେହେ ଥିବ । ମହୁ ପିପ୍ପଳୀରେ ଏ ରସ ଦେବ ।
ବାତ ଶଳିଷମା ଯହିଁ ପ୍ରକାଶ । ଲବଙ୍ଗରେ ଦେବ ଏ ଦିବ୍ୟ ରସ ।
ପୋଖତିକୁ ଅଦାରସରେ ଦେଇ । ନୋହିଲେଣ ଚିତାମୂଳରେ ଖାଇ
ନୋହିଲେ ବେଙ୍ଗୁନିଆ ଦୋରୁଅରେ । ବ୍ୟାଧି ଛାଡ଼ିଯିବ ଏତେ ପ୍ରକାରେ
ଶ୍ରୀ ଜଗନ୍ନାଥଙ୍କ ଆଜ୍ଞା ପ୍ରମାଣେ । ଦୀନକୃଷ୍ଣ ଦାସ ଓଷଧ ଭଣେ ।

## ତାରେକ ରସ

ତାରେକ ରସ ଯେଉଁ ଭାବେ ହୋଇ । ତହିଁକି ଓଷଧ ଦେଉଛି କହି
ଗନ୍ଧକ ମଣିସିଳ ପାରା ରସ । ତୁତିଆ ମହୁରା ଟାଙ୍କଣା ଯିସ
ଅଭର ଭସ୍ମ ଲୋହ ଭସ୍ମ ଦୁଇ । ରସ ସିନ୍ଦୂର ଯେ ମାଢ଼େକ ହୋଇ
ଦାରୁ ତିନିମାଢ଼ ଗରଳ ଚାରି । ରୋହି ପିତ ମାଢ଼େ ତହିଁରେ ଭରି ।
ଯେତେକ ଓଷଧ କହିଲେ ବର୍ଣ୍ଣ । ସବୁଠାରୁ ମାଢ଼େ ମାଢ଼େକ ଘେନ
ମଇଁଷି ପିତରେ ଖଳିବ ବାଡ଼ି । ଅଦାରସ ଦେଇ ବାନ୍ଧିବ ବଡ଼ି ।
ନୋହିଲେ ଚିତାମୂଳ ଦୋରୁଅରେ । ବଡ଼ ଜିରା ଯେହ୍ନେ ସେହି ପ୍ରକାରେ ।
ଚକ୍ଷୁ ରୋଗକୁ ତ୍ରିକୂଟରେ ଦେଉ । ହିଙ୍ଗୁଳ ରସରେ ପୋଖତୀ ଖାଉ ।

ବାତ ଶଳିକ୍ଷମା ଯହିଁ ପ୍ରକାଶ । ଲବଙ୍ଗରେ ଦେବ ଏ ଦିବ୍ୟ ରସ ।
ଜଳା ସନ୍ନିପାତ ଯାହାକୁ ହୋଇ । ଚତୃ ଯାତକରେ ଏ ବଡ଼ି ଦେଇ ।
ପିତ ଦୋଷକୁ ମହୁ ଘେନି ଖାଇ । ବାଢ଼ି ଲୋକକୁ ତୋଡ଼ାଣିରେ ଦେଉ
ପୋଖତୀ କି କାଞ୍ଜି ପାଣିରେ ଭରି । ତାରେକ ରସ ଏତେ ବ୍ୟାଧି ହରି ।

# ପ୍ରତାପ ଲଙ୍କେଶ୍ୱର ରସ

ପ୍ରତାପ ଲଙ୍କେଶ୍ୱର ଯେଉଁ ଭାବେ । ତହିଁର ମହିମା କହିବା ଏବେ ।
ପାରୁଅରସକୁ ଷଢ଼ ଭାଗ କରି । ସର୍ପ ଗରଳ ଦୁଇ ଭାଗ କରି ।
ମହୁରା ଛଢ଼ ଭାଗ ହୋଇବ ଯେତେ । ଗନ୍ଧକ ତହିଁରେ ଭରିବ ତେତେ
ମଣିସିଳକୁ ଦୁଇଭାଗ ଭରି । ହରିତାଳ ତହିଁ ଦ୍ୱିଭାଗ କରି ।
ଟାଙ୍ଗଣା ବେନି ତମ୍ବାଭସ୍ମ ତିନି । ମଗର ପିତ ଦୁଇଭାଗ ଘେନି ।
ମାଛ ପିତ ଦ୍ୱି ଭାଗ କର । ମଇଁଷି ପିତ ଦୁଇଭାଗ ଭର ।
ବୋଦା ପିତକୁ ଦୁଇଭାଗ କରି । ସମଭାଗ କରି ବାନ୍ଧିବ ବଢ଼ି ।
ଏଥକୁ ଫେଡ଼ିଣ କହିବା ଧନ୍ଧ । ଚିରାଇତା ରସେ ଏ ବଡ଼ି ବାନ୍ଧ ।
ଚିରାଇତା ରସ ନ ପାଇ ଯେବେ । ଅଦାରସ ଦେଇ ବାନ୍ଧିବ ତେବେ ।
ଆବର କଥାଏ କହିବା ଯାହା । ଗୁଞ୍ଜ ପ୍ରମାଣେ ବାନ୍ଧିଥିବ ତାହା
ଗୋଟିଏ ବିହିବ ଯେଉଁ ମଳୁକୁ । ପାଞ୍ଚ ପଇଡ଼ ପିଆଇବ ତାକୁ ।(୧)
ଗଉତମ ଋଷି ବଚନ ଏହି । ଏଥକୁ ଅପ୍ରତେ ନ କର କେହି ।
ଶ୍ରୀ ଜଗନ୍ନାଥଙ୍କ ପଦ୍ମ ଚରଣ । ଦୀନକୃଷ୍ଣ ଦାସ ପଶେ ଶରଣ ।

# କଫକେତୁ ରସ

କଫକେତୁ ରସ ଯେଉଁ ବିଧାନେ । ତାହା କହିଦେବା ଶୁଣ ସୁଜନେ
ରସ ମାଢ଼େକ ଯେ ଗନ୍ଧକ ଦୁଇ । ମରିଚ ମାଢ଼େ ଯେ ଲବଙ୍ଗ ଲାଇ
କନକା ଚାରିମାଢ଼ ତହିଁରେ ଭର । ଜମ୍ବିଳ ରସରେ ମର୍ଦ୍ଦନ କର

(୧) ଖ ପୋଥିରେ ଅଧିକ : ପରୀକ୍ଷ କରିବ ନବାଚ ପଣା । ବଇଦ ହୋଇଣ ନୋହିବ ବଣା ।

ଫେଡ଼ି କହୁଅଛି ଔଷଧ ସନ୍ଧି । ଗୁଞ୍ଜ ପ୍ରମାଣରେ ଏ ବଡ଼ି ବାନ୍ଧି(୧)
ପିତ୍ତ ଶଳିଷମା ଯହିଁ ପ୍ରକାଶ । ଲବଙ୍ଗ ଘେନି ଖାଉ ଏ ରସ ।
ବାତୁତ ପୁଅକୁ କଲେଟି ଜ୍ୱର । ଏ ବଡ଼ି ଦେବ ଅକ୍ରାନ୍ତି ଦୋରୁଅର ।
କଫ କେତୁ ରସ ଏତେକ ଗୁଣ । ସୁବୁଧି ସାଧୁବଦ୍ୟ ଜନେ ଶୁଣ ।

## ମହରା ଅଷ୍ଟକ

ମହୁରା ଅଷ୍ଟକ ଏ ମଣିସିଳ । କକଡ଼ା ଶୃଙ୍ଗୀକୁଡ଼ ଘେନି ମନେ ବିଚାର
ଏତେ ପଦାର୍ଥ ଘେନି ଶୁଖାଇ ଚୁର । କନାରେ ଛାଣି ମାଇପାରେ ଭର ।
ଖଲିବୁ ସୋରିଷ ମାଇପା ଘେନି । ଖରାରେ ଦେବୁ ଦିନା ଦୁଇତିନି ।
ଦେହରେ ଏହାଯେ ଲୋପନ କର । ଚମଦଲା ଯାବୁ ବିହିଷ୍ଠି ଦୂର ।

## ଦୁର୍ଗା ଅଭ୍ରରସ ଧାତୁକାଦି ଚୂର୍ଣ୍ଣ

ଶୁଣ ସୁବୁଧି ସାଧୁ ବଦ୍ୟଜନ । ଏବେ କହିବା ଧାତୁକାଦି ଚୂର୍ଣ୍ଣ
ଧାତୁକୀ ଫଳ ଯେ ଅତୋସି ବେନି । ମୁଥା ବେଲସୁଣ୍ଠା ଧନିଆ ତିନି ।
ଶୁଣ୍ଠି ବଡ଼ ଜିରା ଯିଅଳା ଭରି । କଳାଜିରା ସଯଳ ସହି କରି
ଖଇର ଇନ୍ଦ୍ରଯବ ସୁପିପ୍ପଳ । ଅକାନବିନ୍ଧି ଯେ ମାଢ଼େକ ମୂଳ ।
ସଇନ୍ଧବ, କୁରୁବେଲି ମୋଚରସ । ଲୋଧ ଯାଇଫଳ ଲବଙ୍ଗ ଯିସ
ସବୁ ଔଷଧ ମାଢ଼େ ମାଢ଼େ କରି । ଖରାରେ ଶୁଖାଇ ଶିଳରେ ଚୁରି ।
ଏଥକୁ ଅନୁପାନ ଦେବା କହି । ମଳୁକୁ ଏହା ଛେଳିଦୁଧରେ ଦେଇ ।
ଭଣ୍ଡାରସ ପାଣିରେ ଖାଇଲେ ଖାଉ । ନୋହିଲେ ମୁସାକାନି ଦୋରୁଅରେ ଦେଉ ।
ଏତେକେ ହଗା ଅତିସାର ଯାଇ । ରକତ ବାଡ଼ି ଆଦି ଭଲ ହୋଇ ।

---

(୧) ଖ ପୋଥିରେ ଅଧିକ
କଫ ଶଳିଷମା ଯା ଦେହେ ଥାଇ । ବାସଙ୍ଗ ରସରେ ଏ ବଡ଼ି ଦେଇ ।

## ବାଳେକ ଚତୁର୍ଥୀ

ଆରେକ ଔଷଧ କହିବା ଏବେ । ବାଳେକ ଚତୁର୍ଥୀ ଯେବଣ ଭାବେ ।
ଯାଇଫଳ ମାଢ଼େ ଅତୋସି ବେନି । ମୁଥା ଟାଙ୍କଣା ଇନ୍ଦ୍ରଯବ ଘେନି
କକଡ଼ା ଶୃଙ୍ଗୀ ଅଗର ଖଇର । ଏ ସାତମାଢ଼ ଏକ କରି ଚୁର
ବାଳୁତ ପୁଅକୁ ମହୁରେ ଦେଇ । ଏତେକେ ଅତିସାର ଭଲ ହୋଇ ।

## କଣ୍ଡୁରୋଗକୁ ଔଷଧ

କଣ୍ଡୁରୋଗ ହୋଏ ଯେମନ୍ତେ ସାଧ । ତହିଁକି କହିବା ଦିବ୍ୟ ଓଷଧ ।
ମଣିସିଳ ମାଢ଼େ ଗନ୍ଧକ ବେନି । କୁଢ଼ କଳାଜିରା ଜିରାକୁ ଘେନି ।
ଖରାଇ ଶୁଖାଇ ଶିଳରେ ଚୂର । ସୋରିଷ ମାଳପା ତହିଁରେ ଭର
ଅଷ୍ଟାଙ୍ଗ ସ୍ୱରୀରେ ଲଗାଇ ଦେଇ । କାହୁ କଣ୍ଡୁ ରୋଗ ଏତେକେ ଯାଇ

## ଅଗ୍ନିମୁଖା ଚୂର୍ଣ୍ଣ

ଅଗ୍ନିମୁଖା ଚୂର୍ଣ୍ଣ ଯେଉଁ ଓଷଧ । ତାହା କହିଦେବା ଶୁଣରେ ବଦ୍ୟ
ଶୁଣ୍ଠି ପିପଳି ଯେ ବିଡ଼ଙ୍ଗ ତିନି । କରଞ୍ଜ ମୂଳ ପାଞ୍ଚମାଢ଼ ଘେନି ।
ଅଭୟା ପାଞ୍ଚମାଢ଼ ତହିଁରେ ଭରି । ପାଞ୍ଚ ପାଞ୍ଚ ମାଢ଼ ସବୁହିଁ କରି ।
ଖରାରେ ଶୁଖାଇ ଶିଳରେ ଚୁର । ଏଥକୁ ଏବେ ଅନୁପାନ କର ।
ସାକରେ ଖାଉ କି ମହୁରେ ଖାଉ । ଆମ୍ବବାତ ପିତ ନ ଥିବ ଆଉ ।
ଅଜୀର୍ଣ୍ଣ ମନ୍ଦ ଅଗ୍ନି ଶ୍ୱାସ କାଶ । ଅରୁଚି ସ୍ଥୁଳ ଶୋଥ ଯାଇ ନାଶ
ଏତେକେ ବ୍ୟାଧି ଏଣେ କ୍ଷୟେ ଯାଇ । ଅଗ୍ନିମୁଖା ଚୂର୍ଣ୍ଣ ଏହାକୁ କହି ।

# କଟିଶୂଳକୁ ଔଷଧ

| | | |
|---|---|---|
| କଟିଶୂଳ ବ୍ୟାଧ୍ ଯେବଣ ଗୁଣ | । | ତହିଁକି ଔଷଧ କହିବା ଶୁଣ । |
| ଚିତାମୂଳ ତ୍ରିଫଳା ବିଡ଼ଙ୍ଗ | । | ଦାରୁ ହଳଦୀ ଦେବଦାରୁ ସଙ୍ଗ । |
| ସରଳ ପୁନ୍ନଣି ଶୁଣ୍ଠି ଉପାମ | । | କଟୁକୀ ରୋହିଣୀ ମଞ୍ଜୁ ଭୂଇଁ ଲିମ୍ବ । |
| ଭାଲିଆ ଦଶ ଚିନା ତହିଁରେ ଭରି | । | ଏତେ ଦ୍ରବ୍ୟକୁ ମାଢ଼େକ କରି |
| ଆହୁରି ଏଥକୁ କର ଔଷଧ | । | ଚୂଆଣି ପାଞ୍ଚମାଢ଼ ତହିଁରେ ସନ୍ଧ । |
| ହେଙ୍ଗୁଳ ଚାରିମାଢ଼ ସଇନ୍ଧବ ଚାରି | । | ଶୁରାଖାର ଯବଖାର କୁ ଭରି । |
| ବେତମୂଳ ବଚସଉଚ ଗାଢ଼ | । | ସାତଦ୍ରବ୍ୟରୁ ଚାରି ଚାରି ମାଢ଼ । |
| ଚାଇକାଠ ବେନି ମାଢ଼ ପୂରାଇ | । | ତ୍ରିକୂଟରେ ତିନିମାଢ଼ ପୂରାଇ । |
| ପରୀକ୍ଷ ଦେବା ଦସମାଢ଼ ମୂଳେ | । | ରସୁଣ ଘେନି ବେନିମାଢ଼ ଠୁଳେ । |
| ଖରାରେ ଖୁଖାଇ ଶିଳରେ ଚୁର | । | କନାରେ ଛାଣି ରସୁଣରେ ଭର |
| ରସୁଣ ଔଷଧ ପେଷିବ ସବୁ | । | କଡୁଆ ମାଳପାରେ ମିଶାଇଦେବୁ । |
| ଯଦି କରି ଥୋଇ ବାନ୍ଧିବ ଗୁଳି | । | ଗୋଟିଏ ଲେଖାଏଁ ଖାଇବ ତୁଳି । |
| ଅନ୍ତବାତ ରୁଦ୍ରବାତ ହୋଇବ ସାଧ୍ | । | ଶୋଥ ସୁଣଫୁଲା ଗୁଳ୍ମ ବ୍ୟାଧ୍ । |
| ପାଣ୍ଡୁର କାମଳ ହୃଦୟ ବ୍ୟଥା | । | ତୃଷା ଆଦି କରି ଖଣ୍ଡଇ ଯଥା । |
| ପଥିକି ତବତ ଭାତ କରିବୁ | । | ଶାଗ ଆମ୍ବିଳ ବିବର୍ଜିତ ସବୁ । |

# ତାଳିଶ୍ୱାଦି ଚୂର୍ଣ୍ଣ

| | | |
|---|---|---|
| କାଶକୁ ଔଷଧ ଦେବା ଯାହାକୁ | । | ତାଳିଶ୍ୱାଦି ଚୂର୍ଣ୍ଣ ବୋଲି ଏହାକୁ |
| ତାଳିସି ପତ୍ରରେ ଶଣ୍ଠି ମରିଚ | । | ପିପ୍ପଳି ଗୁଡ଼ୁତେକ ଅଳାଇଚ । |
| ଏତେ ଦ୍ରବ୍ୟକୁ ମାଢ଼େ ମାଢ଼େ କରି | । | ତିରିଶି ମାଢ଼ ଯେ ଶାକର ଭରି । |
| ଖରାରେ ଶୁଖାଇ ଶିଳରେ ଚୁର | । | କନାରେ ଛାଣିଣ ଯତନ କର । |
| ଏଥକୁ ସଂଶୟ ଫେଡ଼ିବା ଛନ୍ଦ | । | ମହୁ ଘିଅ ଦେଇ ମୋଦକ ବାନ୍ଧ । |

ବାତପିତ୍ତ ଶଳିଷମାରେ କାଶ । ଏତେକେ ବ୍ୟାଧି ସେ କରଇ ନାଶ ।

ପାଣି ନ ଲାଗଇ ଯେମନ୍ତ ପୁଣ । ତହିଁକି ଔଷଧ କହିବା ଗୁଣ

ଶୁଣ୍ଠି ହରିଡ଼ା ସଇନ୍ଧବ ଲୁଣ । ଚିରାଇତା ଘେନି କର ଉପାମ ।

କାଶ ଶ୍ୱାସ ଜର ସବୁ ହି ଯାଇ । ପେଟ ନ ଜାଣଇ କେତେକ ଖାଇ ।

## ଲବଙ୍ଗାଦି ଚୂର୍ଣ୍ଣ

ଆବର କଥାଯେ ଶୁଣ ଉପାମ । ଲବଙ୍ଗାଦି ଚୂର୍ଣ୍ଣ ଏହାର ନାମ

ଲବଙ୍ଗ ଗନ୍ଧେକ ତୁଲ୍ୟ ବା ଫୁଲ । ଜିରା ଚନ୍ଦନ ନୀଳ ଉତ୍ପଳ

ତଗର ପାଦ ଯେ ପିପ୍ପଳି ଭରି । ପଦ୍ମକେଶ ଶୁଣ୍ଠି ଆଦି କରି ।

ନାଗେଶ୍ୱର କୁରୁକେଲି ଯେହୁ । ସବୁ ବାସ ଘେନି ଏ ଜାତ ମହୁ ।

ଖ୍ରକୋଳି ଯେଉଁ ଭାର୍ଗବ ମୁଥା । କୁଞ୍ଜକେଶର ବା ତାଳମୂଳୀ ଯଥା ।

ଦଣ୍ଡି ପହୋଲା ଯେ ରସ ସିନ୍ଦୂର । ଶାକର ମହୁ ଯେ ତହିଁରେ ଭର ।

ଏତେ ଦ୍ରବ୍ୟରୁ ମାଢ଼େ ମାଢ଼େ କରି । ବତିଶମାଢ଼ ଯେ ସାକର ଭରି ।

ଶୁଖାଇ କରି ଚୂର୍ଣ୍ଣ କର ସବୁ । ବ୍ୟାଧି ଅନୁକ୍ରମେ ମନୁକୁ ଦେବୁ ।

ଯେତେକ ବ୍ୟାଧି ଏ କରଇ ନାଶ । ତାହା କହିଦେବା ଶୁଣ ସନ୍ଦେଶ ।

ଅତିସାର ହଗା ଦୁର୍ବଳ ଯେହୁ' । ମନ୍ଦାଗ୍ନି ଜୀର୍ଣ୍ଣ ଅଜୀର୍ଣ୍ଣ ହିଁ ଆଉ ।

ଶୂଳ କାଶ ଶ୍ୱାସ ଅରୁଚି ଯାଇ । ପେଟ ବଥା ଆଦି ନ ଥାଇ କେହି ।

ପେଟ ଫୁଲି ଥାଇ ପିତ ଅଜୀର୍ଣ୍ଣ । ସବୁ ହରଇ ଲବଙ୍ଗାଦି ଚୂର୍ଣ୍ଣ ।

ସରସନା ଏକା ଯେଉଁ ଭାବେ ହୋଇ । ଶୁଣ ବଦ୍ୟ ଜନେ ଦେଉଛି କହି ।

ରକତ ଚିରାଇତା ମାଢ଼େକ ମୂଳ । ହରିଡ଼ା ଯଅଁଳା, ବାହାଡ଼ା ଫଳ ।

ଗନ୍ଧକ ବିଡ଼ଙ୍ଗ ହେଙ୍ଗୁଳ ଭାବ । ଗନ୍ଧ ଶୁଙ୍ଗୀ ଘେନି ଏ ଇନ୍ଦ୍ରଯବ ।

ପଞ୍ଚ ଲୁଣ ଘେନି ହେଙ୍ଗୁଳ ଅତ । ଗୃହଧର୍ମ ମୂଳେ ଆବର ବଚ ।

ଘନ ପ୍ରପଞ୍ଚ ରସ ମିଶାଇ । ଗଯ ପିପଳୀ ମା୧ଢ଼ ମୂଳେ ଦେଇ ।

ଝାଡ଼ କାକୋଲ ଯେ ବିସେଯେ ଗାଢ଼ । ତ୍ରିକୂଟ ଭରିବ ଏ ତିନି ମାଢ଼ ।

ମାଢ଼େ ଲେଖାଏଁ ସବୁଠାରୁ କରି । ଖରାରେ ଶୁଖାଇ ଶିଳରେ ଚୂରି ।
ଝୋଲାକନା ଘେନି ଛାଣିବୁ ସବୁ । ମାଢ଼େ ଲେଖାଏଁ ଯେ ମଲୁକୁ ଦେବୁ ।
ଓଷଧ ଖାଇଲା ଉତାରେ ପୁଣି । ଚଳୁଏ ପିଇବ ତବତ ପାଣି ।
ସରସନା ଏକା ଖାଇବ ଯେହି । ଓଦରି ରୋଗ ପେଟବଥା ଯାଇ ।
ଅଜୀର୍ଣ୍ଣ ତୁ ପାରୁ ଯେତେକ ଲେଖା । ସହୁ ହରଇ ସରସନା ଏକା ।
ଉଷା ଜଳ ପାଣି ଭକ୍ଷିବ-ଯେଉ । ଧନତ୍ରି ବଚନ ଅଟଇ ଏହୁ ।
ଏ ପାଣି ମହିମା କହିବି କିସ । ନାନା ରୋଗମାନ କରଇ ନାଶ ।
କାଶ ଶ୍ୱାସ ଯେ ଅତିସାର ଜ୍ୱର । କଣ୍ଠକୁଷ୍ଠ ବ୍ୟାଧି ପ୍ରମେହ ହର ।
ମୁତ୍ରକ ଯେ ଶୋଥ ଆରସା ମୂଳେ । ଶିର ରୋଗ କର୍ଣ୍ଣ ରୋଗ ଯୁଗଳେ
ନାସା ରୋଗ ଚକ୍ଷୁ ମୁଖର ବ୍ୟାଧି । କଫ ରୋଗ ପିତ ରୋଗ ହି ସାଧି
ଧାତୁ କ୍ଷୟେ ପେଟ ବଥା ସହିତେ । ପେଟ ଫୁଲା ଆମ ଅଜୀର୍ଣ୍ଣ ଯେତେ
ଓସା ଜଳ ପାଣି ଉଷିବ ଯେହୁ । ଏତେ ବ୍ୟାଧିକି ନ ଡରଇ ସେହୁ ।

## ଛଉକୁ ଔଷଧ

ସୁବୁଧି ସାଧୁ ବଦ୍ୟ ଜନେ ଶୁଣ । ଛଉକୁ ଔଷଧ କରିବାପୁଣ ।
ହରିତାଳ ମାଢ଼େ ଯତନ କରି । ଚୁନ ପାଞ୍ଚଚିନା ତହିଁରେ ଭରି ।
ଚୂଆ ପିହାଣ ଗୋଟାକରେ ଯୋଗ । ଦୁବରସ ଘେନି ଖଲିବ ବେଗ ।
ଛଉମାଡିଥିବ ଯେତେକ ଦୂର । ତହିଁରେ ଔଷଧ ଲେପନ କର ।
ତିନି ଦିନ ଲେପ ଆପଣା କାଏ । ଏତେକେ ସେ ବ୍ୟାଧି ହୋଇବ କ୍ଷୟେ ।
ଦୁଣ୍ଡ ପୋଡା ମୂଳ ଜୁଆଣି ଦେଇ । ମରିଚ ଗୋଟା ସାତ ତହିଁରେ ନେଇ ।
ଲେମ୍ବୁଉ ପାଣିରେ ବାଟି ଲିପିଲେ । ଛଉ ଭଲ ହୁଏ ଏତେକ କଲେ ।
ଲେମ୍ବୁଉ ପାଣି ନ ପାଇବ ଯେବେ । କାଞ୍ଜି ପାଣିରେ ବାଟିଦେବ ତେବେ ।
ଏତେ ଛଉରୋଗ ଭଲ ହୁଅଇ । ଛଣଫୁଲ ଦେଲେ ତେବେ ସେ ଯାଇ ।

# ନାନାବାତକୁ

ଆବର କଥାଏ କହିବା ଶୁଣ । ନାନା ବାତବ୍ୟାଧି ଔଷଧ ପୁଣ ।
ଆମବାତ ଗଣ୍ଠିବାତ ଯୁଗତେ । ଏକ ଅଙ୍କବାତ ଶୁଳ ସହିତେ ।
ବେଲ ଚାରି ମାଢ଼ ରସତା ଚାରି । ଶତାଉରି ଛତିଅନାକୁ ଭରି ।
ମହତ ଡଂକାରି ବଡ଼ ଫଳ କର । ତାଳମୂଳି ଘେନି ଦୁଦୁରା ଚେର ।
ଆବର କୁକ୍ଷି କେସରଦା ମୂଳ । ଦ୍ରବ୍ୟ କେ ଘେନ ଚାରିମାଢ଼ ତୁଳ ।
ଚାରିପଳ ତହିଁ ନବାତ ଭରି । ଶୁଖାଇ ସବୁ ଗୁଣ୍ଡି କରି ଚୁରି ।
କନାରେ ଛାଣିଣ ଥୋଇଣ ଆଉ । ମାଢ଼େ ଲେଖାଏଁ ପ୍ରତିଦିନ ଖାଉ ।
ଏତେକେ ନାନା ବାତ ଯାଉ କ୍ଷୟେ । ଆବର ବାତକୁ ଶୁଣ ଉପାୟେ ।
ଗୁଳୁଚ୍ୟାଦି ବ୍ୟାଧି ଯେବଣ ବାତ । ତହିଁ କି କହୁଛି ଓଷଧ ମତ ।
ଗୁଳୁଚି ଚାରି ଗୋଛା ଆଣିମ ଠୁଳେ । ଗଣ୍ଠିମାନ କାଟି ଛେଚିବ ଶିଳେ ।
ପାଣି ନଉଟି ଗୋଟାକରେ ଭରି । ରାସଣା ପଳେ ପକାଇବ ଚୁରି ।(୧)
ଛତାଉରି ଦୋରୁଅରେ ତାହା ଖାଇବ । ଗୁଳୁଚି ବାତ ଏତକରେ ଯିବ ।
ଶୁଣ୍ଠି ହରିଦ୍ରା ଯେ ମୁଥାକେ ଶ୍ୱର । ପାଣି ନ ଲାଗଇ ନାନା ଦେଶର ।
ଧନିତ୍ରୀ ଅଶ୍ୱିନୀ କୁମର କହେ । ନାନା ବ୍ୟାଧି ପାଣିକି ନ ଥାଇ ଭଲେ ।
ରସ ବିସ ଗନ୍ଧକ ହିଙ୍ଗୁଳ ମିଶି । ସମ ଭାଗ କରି ପିପଳୀ ଶୁଣ୍ଠି ।
ଗୁଞ୍ଜ ପ୍ରମାଣେ ଏ ବଡ଼ି ବାନ୍ଧୁ । ଚଉଷଠୀ ରୋଗ ହରଇ କନ୍ଧୁ ।
କ୍ଷୁଧା କରଇ ମନ୍ଦ ଅଗ୍ନି ପାଣି । ବାରମାସରେ ନ ଲାଗଇ ପାଣି ।
ବଦ୍ୟ ଧନ୍ୟନ୍ତ୍ରି କହିଲେ ସାର । ଏ ରସର ନାମ ଅଗ୍ନି କୁମାର ।

---

(୧) ଖ ପୋଥିରେ ଅଧିକ

ପାଣି ନଉଟି ଗୋଟିକରେ ଭର । ତହିଁରେ ଥିବ ସେ ବେନି ପହର ।
ଥିର ହେବାର ଚ ଛାଣିମ ବାଡ଼ି । ଗୋଳୁଚି ଛେଚା ପକାଇବ କାଢ଼ି ।
ନଉଟି ଭିତରେ ରହିବ ଯାହା । କନାରେ ଥାପି ଯେ ଘେନିମ ତାହା ।
ସମୁଦ୍ର ଫଳ ଦଶଗୋଟା ଚୁର । ମରିଚ କରି ସେ ତହିଁରେ ଭର ।
ରାସଣା ପଳେ ତହିଁରେ ପଡ଼ିବ । ଛତାବରି ଦୁରୁଅରେ ଖାଇବ ।
ନୋହିଲେ ଛାଗଳ ଦୁଗ୍ଧରେ ଖାଉ । ଗୁଳୁଚ୍ୟାଦି ବାତ ଏମନ୍ତେ ଯାଉ ।

ଆବର କଥାଏ କହିବା ପୁଣ । ବିଶୁଚି ବାଡ଼ିର ମହିମା ଶୁଣ ।
ପିତା ଅଜୀର୍ଣ୍ଣ ହୋଇଥାଇ ନିଅତ । ଶ୍ରାହାନ କରି ଭୁଞ୍ଜଇ ଭାତ ।
ନିଶା ଅର୍ଦ୍ଧେ ହୋଇ ସ୍ତିରୀ ପ୍ରସଙ୍ଗ । ତହିଁରୁ ବିଭଳ ହୁଅଇ ଅଙ୍ଗ ।
ବାନ୍ତି ଅଜୀର୍ଣ୍ଣ ଏ ଯମର ଧାଡ଼ି । ଏହାକୁ ବୋଲିଟି ବିଶୁଚୀ ବାଡ଼ି ।
ଏ ବାଡ଼ି ଯାହାକୁ ପ୍ରାପତ ହୋଇ । ଦେବତା ହୋଇଲେ ମରଇ ସେହି ।
ମଥାନ ଜ୍ୱର ରାତିରେ କରଇ । ଦାହ କରି ନିଶି ପାହିଲେ ନାହିଁ ।
ସଳିଷମା ଜ୍ୱର ଅଟଇ ଏହି । ଏଥକୁ ଲିମ୍ବାଦି ପାଞ୍ଚନ ଦେଇ ।
ଲିମ୍ବପତ୍ର ତହିଁ ଧନିଆ ରସ । ତ୍ରିଫଳ ପାପଡ଼ା ପୋଟଳ ରସ ।
ମହୁ ପରୀକ୍ଷେ ପିଆଇବ ଯେବେ । ଏକାନ୍ତ ଶଳିଷମା ଯାଇ ତେବେ ।
ଯେବଣ ମନ୍ଦୁ ତାଲି ନ ପାରଇ । ଗିରି ଭଗ୍ନ ହୋଇ ମୁକ୍ଷାହି ଯାଇ ।
ଅତି କଷ୍ଟରେ ମତି ହୋଇ ଭ୍ରମ । ଏମନ୍ତ ମନ୍ଦୁକୁ ନିଅଇ ଯମ ।
କରପାଦ ବେନି ଅତି ଶୀତଳ । ନାସା କପାଳରୁ ବହଇ ଝାଳ ।
କଟୀଭାଗ ଶୁଳା କରଇ ପୁଣି । ବେନି ଲୋଚନରୁ ବହଇ ପାଣି ।
ଓଷ୍ଠ କଣ୍ଠ ଶୁଖି ଦିଶଇ କଳା । କ୍ଷଣକେ ଚେତନ କ୍ଷଣକେ ଭୋଳା ।
ଦେହ ଗୋଳା ଦେଇ ଗର୍ଭରେ ଜ୍ୱର । ମଣିଷ ଦେଖିଲେ କହେ ଅନ୍ତର ।
ଓଷଧ ନ ଖାଇ ପଦକେ ଆଶ । କ୍ଷଣେ କ୍ଷଣେ ଛାଡ଼େ ଖର ନିଃଶ୍ୱାସ ।
ବଦ୍ୟ ଧନନ୍ତରୀ କହିଲେ ଥାଇ । ଏମନ୍ତ ମନ୍ଦୁ·ହେ ବ୍ରତୀବ କାହିଁ ।
ଯମର ଧାଡ଼ି ଲାଗିଛି ଯାହାକୁ । ଔଷଧ ଦେଇ କି କରିବ ତାକୁ ।
ଓଷ୍ଠ କଣ୍ଠ ଶୁଖି ଜିଭ୍ୟା କଠିଣ । କାଶ ଶ୍ୱାସ ହୋଇ ମତିଭ୍ରମଣ ।
ବଚନ କହିଲେ ନ ଶୁଣେ ସେହୁ । ଏମନ୍ତ ମନ୍ଦୁକୁ ତାରିବ କେହୁ ।
ଆବର ଯେହୁ ଅସାଧ ବ୍ୟାଧି । ତାହା କହିଦେବା ଶୁଣ ସୁବୁଦ୍ଧି
ପହଙ୍କ ପ୍ରାୟେ ବାଗା ଯାହାର କାୟେ । ନୋହିଲେ ହୋଏ ଜମ୍ବୁ ପାଣି ପ୍ରାୟେ
ନୋହିଲେ ବେଶୁର ପ୍ରାୟେକ ଦିଶୁ । ପାଣି ପ୍ରାୟେ ହୋଇ ଜ୍ୟୋତି ପ୍ରକାଶୁ ।

ନୋହିଲେ ହେଉ ଧବଳ ବର୍ଣ୍ଣ ପ୍ରାୟେ । ବସାଦହି ପ୍ରାୟେ ଦିଶିବ କାୟେ
ଏମନ୍ତ ପ୍ରକାରେ ହୋଇବ ଯେହୁ । ଏଥକୁ ଆନ ମଉଷଧି ନୋହୁ
ଗ୍ରହଣୀ ଗଜକେଶ୍ୱରୀ ନି ଦେଇ ।

# ରକ୍ତଆରସାକୁ

ବଦ୍ୟଜନ ଶୁଣିମ ଯେବେ । ଆହୁରି ଓଧେ କହିବା ଯେବେ ।
ଇନ୍ଦ୍ରୀ ଦ୍ୱାରେ ଯେବେ ପଡ଼େ ରକତ । ତହିଁକି ଓଷଧ କର ଏମନ୍ତ ।
ଗଇଶ ମଞ୍ଜି ପଦ୍ମଫୁଲ ଧର । ଶ୍ୱେତ କୋଇଲେଖା ମଞ୍ଜି ହିଁ କର ।
ବାହାଡ଼ା ମଞ୍ଜି ସମଭାଗ ଆଣି । ନାଗେଶ୍ୱର ପାଶେ ଲବଙ୍ଗ ପୁଣି ।
ଅଳାଇଚ ଯାଇଫଳ ହିଁ ଭର । ମାଢ଼େ ଲେଖାଏଁ ସବୁଠାରୁ କର ।
ଶୁଖାଇ ଏମାନ କରିବ ଚୂର୍ଣ୍ଣ । ନବାତ ମାଢ଼େ ଯେ ତହିଁକି ଘେନ
ତିନିଦିନ ଏହା ଖାଇବ ଯେବେ । ରକତ ଆରସା ଖଣ୍ଡଇ ତେବେ ।
ଅଷ୍ଟଖୁଡ଼କୁ ମୌସୁଧି ଶୁଣ । ଶୁନାରି ବକଳ ପତର ଆଣ ।
ଚାକୁଣ୍ଡା ମଞ୍ଜି ସହରାଜ ଭରି । ହରିଡ଼ା ବାହାଡ଼ା ଯତନ କରି ।
ଇନ୍ଦ୍ରମାରି ସଙ୍ଗେ ଖରଡ଼ା ଲୁଣ । ଯିଥଳା ଅଣକ୍ଷୁକର ଭିଆଣ ।
ସେମାନ ସବୁ ଶୁଖାଇ ଚୁରି । ତିନିଦିନ ଖାଉ ଯତନ କରି ।
ଅଷ୍ଟକୁଢ଼ ଯେଣେ ହୋଇବ ନାଶ । ବିଚାରି କହିଲେ ଏଥି ସନ୍ଦେଶ ।
ଶ୍ରୀ ଜଗନ୍ନାଥଙ୍କ ଆଜ୍ଞା ପ୍ରମାଣେ । ଦୀନକୃଷ୍ଣ ଦାସ ଔଷଧ ଭଣେ ।
ରସ ବିସ ଗନ୍ଧକ ଏ କ ସମତୁଲ । ମରିଚ ଦାରୁ ଯେ ଅତି ଅମୂଲ୍ୟ ।
ମାଛ ମଇଁଷି ଯେ ମୟୂର ପିତ । ଛେଳିକି ଘେନିଣ ଏ ଚାରି ପିତ ।(୧)
ପହରକେ ଦେବ ଏବେ ଯାମ । ନିର୍ମଳ ସୂଚିକା ଏ ରସ ନାମ ।
ଶ୍ୱାସ କାଶ ତ୍ରିଦୋଷଇ ଯାଇଁ । ଜ୍ୱର ଛାଡ଼ି ଶତେବରଷ ଥାଇ ।

(୨) ଖ ପୋଥିରେ - ମେଷ ମଇଁଷି ଯେ ମୟୂର ପିତ । ମାଛକୁ ଘେନିଣ ଏ ଚାରିପିତ ।

# ଖପରଭସ୍ମ

ଆବର ଓଷଧ କହିବା ଶୁଣ । ଖପର ଭସ୍ମ ଯେଉଁ ଭାବେ ପୁଣ ।
ଖପର ପଲେ ଯେ ଯତନ କରି । ଗୋଦନ୍ତା ଦାରୁ ପଲେ ତହିଁରେ ଭରି ।
ଦୁହିଙ୍କି ଭରି ଛେଳି ଦୁଧେ ଖଇ । ଆବର କଥାଯେ କହିବା ଭଲ ।
ତଳରେ ଅରଖ ପତରେ ଛାଇ । ଉପରେ ଲେଶିବ ପିହାଣ ଦେଇ ।
ଚୁଲିରେ ଘଡ଼ି ବସାଇ ତୁରିତେ । ଜାଳ ଦେଉଥିବ ଦିହୁଡ଼ି ମତେ ।
ବେନି ପହର ଯେ ଜାଳିବ ଯୋଇ । ଖପର ଯିବ ଲୁଣ ପ୍ରାୟେ ହୋଇ ।
ସନ୍ନିପାତ ଥିଲେ ଏ ଭସ୍ମ ଖାଇ । ଆବର ଗୁଳ୍ମ ବ୍ୟାଧିକି ଦେଇ ।
ଅଷ୍ଟାଙ୍ଗ ଜ୍ୱରକୁ ଏ ଭସ୍ମ ଦେଇ । ଶାହାସ୍ତ୍ରେ ଏମନ୍ତ ଅଛଇ କହି ।

# ଶିଶା ଭସ୍ମ

ଶିଶା ଭସ୍ମ ହୋଇ ଯେମନ୍ତ ଭାବେ । ସେ କଥା ବିସ୍ତାରି କହିବା ଏବେ
ଶିଶା ପ୍ରଥମେ ପାତ୍ର କରି ଗଢ଼ି । ମଣି ଶିଳ ଘେନି ଖଲିବ ଯଡ଼ି ।
ଛେଳିଦୁଧ ତହିଁ ଲେପନ କର । ଶୁଖାଇ ଆଟିକା ଗୋଟିକେ ଭର ।
ଅରଖ ପତ୍ର ଯେ ତଳରେ ପଡ଼ି । ଉପରେ ପିହାଣ ମୁଦ ନିବାଡ଼ି ।
ବେନି ପହର ଜାଳ ଦେବ ଯେବେ । ଶୀଶା ଭସ୍ମ ହୋଇ ପିଙ୍ଗଳ ତେବେ ।
ନାନା ବ୍ୟାଧି କାଶର ଏ ମଉଷଧି । ଗର୍ଭରୋଗ ପେଟବଥା ହି ଆଦି ।
ଆବର ଯେଉଁ ସିସାଭସ୍ମ କରି । ସେକଥା କହିବା ଶୁଣ ବିଚାରି ।
ସୀସାରୁ ଯେତେ ଯବଖାଇ ତେତେ । ଶଙ୍ଖଗୁଣ୍ଡି ତହିଁ ଅଧ ଯୁଗତେ
ପଳାଶ ଛେଳି ପତ୍ର କର ଅଧ । ଥୋଇବ ଆଟିକା ଗୋଟିକ ମଧ
ଉପରେ ପିହାଣ ଦେଇ ଲେପିବା । ତଳରେ ଜାଳ ଯେ ବେଉଣ ଥିବ ।
ଏମନ୍ତ ସୀସା ଭସ୍ମ ହୋଇଯାଇ । ଶୁଣ ବଦ୍ୟଜନେ ଦେଉଛି କହି ।

ବେନି ପ୍ରହରେ ଯେ ହୋଇ ଦହନ । ଦେହ ଦିଶୁଥାଇ ଅରୁଣ ବର୍ଣ୍ଣ
ଏ ସୀସା ଭସ୍ମର ଗୁଣ ଅପାର । ଶୂଳ ଗ୍ରହଣୀ ରକ୍ତ ଅତିସାର ।
ଆମ୍ଳ ଗୁଳ୍ମ ଆଦି କରି ମରେ । ଏତେ ବ୍ୟାଧିକି ଭଯେ ନ କରେ ।
ଆହୁରି ଓଷଧ ଗୋଟିଏ ଖାଉ । ମହୁରା ତେଜ ନ କାଟିବ ଆଉ ।

## ଛଉ ଯାଦୁକୁ ଔଷଧ (୧)

ଅଜା ଛେଳି ଯେ ଛେଳି କି କହି । ତାହା ମୂତ ଧରି ଅମର ଦେଇ
ଯମର ଷୋଭ ବୋଲାଇ ଯେହୁ । ଗୁଳୁଚି ଦଳଟି ଅଟଇ ସେହୁ ।
ଗବାକ୍ଷେ ଧେନୁ ଗାଈ ସ୍ତୃତ ଧରି । ପରସିରି ଯେ ଅଳକ୍ଷ୍ମ କରି
ଯର ପୁରଯେ କାଞ୍ଜି ପାଣି କହି । ମୂଳା ମଞ୍ଜି ପୁଣି ହଳଦୀ ଦେଇ ।
ଯବଖାର ତହିଁ ଭିତରେ ଭେଟି । ଏତେ ଦ୍ରବ୍ୟ ସବୁ ଶିଳରେ ବାଟି ।
ଛଉ ଯାଦୁ ଯାହା ଶରୀରେ ଥିବ । ଲେପଦେଲେ ତିନିଦିନ ରେ ଯିବ ।
ଶୁଣ୍ଠି ହରିଦ୍ରା ସମଭାଗ କରି । ସଏନ୍ଧବ କୁଆଣି ତହିଁରେ ଭରି
ପଛେ ପିଆଇବ ତବତ ପାଣି । ଆଉ କି କରିବ ବଦ୍ୟକୁ ଆଣି ।
ଧନତ୍ରି କହିଲେ ଓଷଧ ଭେଦ । ତିନିଦିନେ ଯେବେ ପାରିବୁ ସାଧ
ବିହିଞ୍ଚି ହୋଇ ଯେଉଁ ଭାବେ ହୋଏ । ତହିଁକି ଓଷଧ ଶୁଣ ଉପାଏ ।
ସାହାଡ଼ା ପତ୍ର ପୋଡ଼ି ଖାରକର । ଛେଳି ଲଣ୍ଡିଭରି ଦୁହିଁକି ଚୁର ।
ଏ ଗୁଣ୍ଡି ବିହିଞ୍ଚି ଉପରେ ଦେଶି । ଅଳପ କରିଥିର କରି ଘଷି ।
ଦିନା ନୁଇତିନ ଏମନ୍ତ କଲେ । ଏକୋଷ ବ୍ୟାଧି ଭଲ ହୋଇ ଭଲେ ।
କାଶ ବ୍ୟାଧି ହୋଇ ଯେମନ୍ତ ଭାବେ । ତହିଁକି ଓଷଧ କହିବା ଏବେ
ତିନିକ୍ୱେନା ସିଝୁରୁ ଡାଲେକ ଆଣି । ଖଣ୍ଡ ଖଣ୍ଡ କରି କାଟିବା ପୁଣି

---

(୧) ଷ ପୋଥିରେ ଛଉ ଯାଦୁକୁ ଔଷଧ ଏହିପରି -
ଅଯର ବିଯର ଗୋବର ଲସା । ଘର କାଞ୍ଜିପାଣି ପରକୁ ବୂଷା
ମୂଳା ମଞ୍ଜିରେ ଯେ ଲେୟାଉ ମିଶା । ଛଉ ଯାଦୁ ଯାଇ ଏକ ଦିବସା ।
ଏଥିରେ ମିଶୁ ଅଯୋମଦା ଖାର । ହାଥିଆ ଯାଦୁକୁ ଟାକର ମାର ।

ସିଝାଇଦେବ ଧାନରେ ଭରି । ସେ ଧାନ ଶୁଖାଇ ଚାଉଳ କରି ।
ସେ ଚାଉଳ ମକୁ ଚୋବାଇ ଖାଉ । ଶାଗ ଆମ୍ବିଳ ନ ଭୁଞ୍ଜିବ ଆଉ ।
ସପତାଏ ଏହା ଖାଇବ ଯେବେ । କାଶବ୍ୟାଧି ଭଲ ହୋଇବ ତେବେ ।
ଅଷ୍ଟଖୁଡ଼ ଯିବ ଯେମନ୍ତେ କ୍ଷୟେ । ତହିଁକି ଓଷଧ କହିବା ଉପାୟେ ।
ଦାରୁ ମହୁରା ଯେ ହେଙ୍ଗୁଳ ତିନି । ମଣିସିଳ ହରିତାଳକୁ ଘେନି ।
ଜୁଆଣି ମରିଚ ପିପ୍ପଳି ଶୁଣି । ଭୋଟ ଲୁଣ ବିଟ ଲୁଣ ହିଁ ଆଣି ।
ଭେରଞ୍ଜି ଚିତା ତାଉରଙ୍ଗ ପୁଣ । ସରଳ ସଇନ୍ଧବ ଖରଡ଼ା ଲୁଣ ।
ଫୁଲା ଲୁଣ ଘେନି ଭାଲିଆ ମୂଳ । ଉଆଳ ମାରି ଆଦର ମହୁଲ ।
ଗୁରୁମାଟିଆ ଚମ୍ପା ମୂଳ ଖୋଳି । ଅରଖ ଦୁଦୁରା କଣ୍ଟି କପାଳୀ ।
ଭୁଇ କୋରିଆ ମାହାଲିମ୍ବ ବେନି । କୋରିଳାଯାତେ କୋରଡଙ୍ଗୀ ଘେନି
ଭୂଇଁ ଲିମ୍ବ ଲିମ୍ବ ଦୁଇ ହୋଅନ୍ତି । ଶୁନାରି ଚମୋଡ଼ା ମୁଥା ରୋଦନ୍ତି
ଜୀବନ୍ତ ଚନ୍ଦ୍ରକାନ୍ତି ମୁନି ଯୁଣ । ନହଲାଙ୍ଗୁଳିଆ ବେଲ ବରଣ
ଅରଖ ମୂଳ ଆଣିଥିବ ଘେନି । ହରିଡ଼ା ବାହାଡ଼ା ଯିଅଁଳା ତିନି ।
ହଂସପାହି ଯଉ ସମସ୍ତ ଖୋଳ । ଏତେ ବୃକ୍ଷରୁ ମାଢ଼େ ମାଢ଼େ ମୂଳ ।
ଶୁଖାଇ ସବୁନ୍ତି ଗୁଣ୍ଡା କରି । ଖାଇଲେ ଅଷ୍ଟ ଖୁଡ଼ ଯାଇସରି ।
ଆବର କଥାଏ କହିବା ଶୁଣ । ଚମଦଳାକୁ ଯେ ଓଷଧ ପୁଣ ।
ସମୂଲିଙ୍ଗା ଗଛ ପତ୍ର ଦୋରୁଅ । ହସ୍ତରେ ଘସି ଚମଦଳା ମାର
ଲୁଣମାଳପା ହସ୍ତରେ ଲେପିକରି । ଅଗ୍ନିରେ ସେକିଲେ ଏମନ୍ତେ ମରି ।
ଧନିତ୍ରୀ ଆଜ୍ଞାରେ ଏମନ୍ତ କହି । ଏଥକୁ ଅପ୍ରତେ ନକର କେହି ।
ଚକ୍ଷୁରେ ଫୁଲା ପଡ଼ିଥିବ ଯାର । ତହିଁକି ଓଷଧ ଉପାଏ କର
ଲଙ୍କା ସିଝୁରୁ ପତର ଆଣି । ଅଞ୍ଜନ ତହିଁରେ ପୋଡ଼ିବା ପୁଣି ।
ଯେଉଁ ଆଖିରେ ଫୁଲା ଥିବ ପଡ଼ି । ପରଳ ସହିତେ ଯିବାକ ଛାଡ଼ି
ସାହାଶ୍ରେ ଲେଖି ନାହିଁ ପୁଣଯାହା । ଅଶ୍ୱିନୀ କୁମାରେ କହିଲେ ତାହା
ଦେହରେ ପୋକ ପଡ଼ିବ ଯେମନ୍ତେ । ତହିଁକି ଓଧେ କର ଏମନ୍ତେ ।
ପୋକଶୁଙ୍ଘା ମୂଳ ମରିଚ ଦୁଇ । ବେଲପତ୍ରି ଘେନି ଚୋବାଇ ଖାଇ

ଦିନା ଦୁଇତିନି କଲେ ଏତେକ । ମଳଦ୍ୱାର ବାଟେ ମଡ଼ଇ ପୋକ ।
ଆହୁରି କହିବା କଥା ଯେ ଶୁଣ । ଆମ୍ଳ ଗୁଳୁମକୁ ଔଷଧ ଗୁଣ ।
ଗାଢ଼ମୂଳ ହେଙ୍ଗୁ ମରିଚ ବେନି । ଶୁଣ୍ଠି ପିପ୍ପଳୀ ସବୁ ହିଁ ଘେନି ।
ହରିଡ଼ା ବାହାଡ଼ା ଏ ଗନ୍ଧ ଶୁଣ୍ଠି । ଅଯମୋଦା ଘେନି ଯିଅଳା ଯେଠି ।
ଅନ୍ୟଗନ୍ଧ ଅଶ୍ୱଗନ୍ଧ ହି ଭଲ । ଲୋହ ଭସ୍ମ କୁଢ଼ ଡାଳିମ୍ବ ଫୁଲ
ଚିମୋଡ଼ା ଧନିଆ, ଏ ଯବଖାର । ମାହାଭଇରୋବ ଏବଢ଼ ଯିରା
ଶାଚି ଲୁଣ ବିଟ ଲୁଣ ପ୍ରମାଣ । ସଚଳ କୁଆଣି ଖରଡ଼ା ଲୁଣ ।
ସମଭାଗ ଏହା କରିବ ଗାଢ଼ । ଦ୍ରବ୍ୟକେ ଯେନ ଚାରି ଚାରି ମାଢ଼ ।
ତପତ ପାଣିରେ ପିଇବ ଯେବେ । ଗୁଳ୍ମ ବ୍ୟାଧି ଭଲ ହୋଇ ତେବେ ।
ନାନା ବିନ୍ଧା ବାତ ଯେମନ୍ତ ସାଧ । ତହିଁକି ଔଷଧ ଶୁଣ ହେବ ବଦ୍ୟ
ସଉପ ବଚ ଗନ୍ଧ ଶୁଣ୍ଠି ତିନି । ବରୁଣ ଛେଲି ପୁରୁଣି ମୂଳ ଘେନି ।
ବେଗୁନିଆ ପସାରୁଣି ସହିତେ । ଟାଙ୍ଗଣ ମୂଳ ଗେଣ୍ଡା ଆଦି ମତେ ।
ସାମୁକ ଆଦି ଷୋହଳ ଦିଆ ମୂଳେ । ପାଣି ଦେଇ ଏହା ବାଟିବ ଶୀଛେ ।
ବିନ୍ଧି ହୋଇବା ଥାନମାନ ଧରି । ତହିଁରେ ଲେପିବ ଯତନ କରି ।
ବିଗୁଣ୍ଡି ଲେପନ ଅଟଇ ଯାଣ । ସୁବୁଧି ସାଧୁ ବଦ୍ୟଜନେ ଶୁଣ ।
ଶ୍ରୀ ଜଗନ୍ନାଥକୁ ଶରଣ ଯାଇ । ବଦ୍ୟ ସାହାଶ୍ର କୃଷ୍ଣଦାସ କହି ।
ଉର୍ଦ୍ଧ୍ୱକାଶକୁ ଏ ମଇଷଧି । ସେକଥା କହିବା ଶୁଣ ସୁବୁଧି ।
ଅରଖକାଠ ସାତଖଣ୍ଡ ଥୋଇ । ଅଗ୍ନିଭଜି କରିବା ନେଇ ।
ଉପରେ ପିହାଣ ଘୋଡ଼ାଇଦେବା । ଗଳା ଗୋଟିଏ ତଳେ କରିଥିବା ।
ସେହିବାଟେ ଧୂଆଁ ନିରୋଧି ଅଛ । ଉର୍ଦ୍ଧ୍ୱକାଶକୁ ଏ ଔଷଧ ଉଛ ।
ଏହି ପ୍ରକାରେ ସପତାଏ କଲେ । ଏତେକେ ସାଧନା ପାଇବ ଭଲେ ।
ଆବର କଥାୟେ କହିବା ସାଧ । ସବାଇ ଘାଆକୁ ଯେଉଁ ଔଷଧ
ପାରାର ରସ ତୋଳା ଏକ ଆଣି । ତୁଳସୀ ପତର ଦୁଇ ଚିନା ପୁଣି ।
ଗନ୍ଧକ ଦୁଇ ଚିନା ତହିଁରେ ଭରି । ହରିତାଳ ପାଞ୍ଚ ଚିନା ତହିଁକରି ।
ମାହା ଭୈରବ ପାଞ୍ଚ ଚିନା ବଚ । ପିପ୍ପଳୀ ପାଞ୍ଚ ଚିନା ତହିଁରେ ଆଞ୍ଚ ।

କାଫଳ ପାଞ୍ଚଚିନା ତହିଁରେ ଭରି । ଶୁଣ୍ଠି ପାଞ୍ଚ ଚିନା ଯତନ କରି ।
ସଇନ୍ଧବ ପାଞ୍ଚ ଚିନା ଉଦ୍‌ଯୋଗେ । ହରିଡ଼ା ବେନି ଗୋଟି ତହିଁର ଭାଗେ ।
ପାଖରା ଖଇର ତୋଳାଏ ଆଣି । ପୁରୁଣା ଗୁଡ଼ ଦୁଇ ତୋଳା ଆଣି ।
ଏତେ ପଦାର୍ଥ ଚୂର୍ଣ୍ଣ କରି ଚୁରି । ବଡ଼ି ବାନ୍ଧିବ ଯେ ଗୁଡ଼ରେ କରି ।
ମନୁକୁ ସ୍ନାହାନ କରାଉଥିବ । ଦୁଇ ସନ୍ଧ୍ୟାରେ ଦୁଇଗୋଟି ଦେବ ।
ଏଥକୁ ପଥ୍ୟ ଯେ କହିବା ସାଧ । ତବତ ଭାତକୁ ଅଲଣା ଦୁଧ ।
ସ୍ନାହାନ କରିବ ଯେବଣ ପାଣି । ପଞ୍ଚୁପତ୍ରି ଘେନି ସିଝିବ ଆଣି ।
ଏହି ଚାପରେ ସାତଦିନ କରି । ସବାଇ ଘାଆରୁ ହେଇବ ପାରି ।
ଦୀନକୃଷ୍ଣ ଦାସ କହିଲେ ଯାହା । ସୁବୁଧି ସାଧୁ ହେତୁ କର ତାହା ।
ପେଟବେଥା ହୋଏ ଯେମନ୍ତ ସାଧ୍ୟ । ତହିଁକି କହିବା ଏବେ ଓଷଧ ।
ଶୁଣ୍ଠି ପାଞ୍ଚମାଢ଼ ଘେନିମା ଗାଢ଼ । ତହିଁରେ ନବ ପିମ୍ପଳି ପାଞ୍ଚ ମାଢ଼ ।
ଜୁଆଣି ପାଞ୍ଚ ମାଢ଼ ତହିଁରେ ଭରି । ଜିରା ମାଢ଼େ ତହିଁରେ ଯତନ କରି ।
କଳା ଜିରା ପାଞ୍ଚ ମାଢ଼ ନିର୍ମାଣି । ଚିରାଇତା ପାଞ୍ଚ ମାଢ଼ ମୂଳ ଆଣି ।
ହେଙ୍ଗୁ ଚାରିମାଢ଼ ସେ ଏକସମ । ମରିଚ ପାଞ୍ଚମାଢ଼ି ତହିଁରେ ସମ ।
ସମଭାଗ କରି କରିବ ଚୂର୍ଣ୍ଣ । ମାଢ଼େ ଲେଖାଏଁ ଭୁଞ୍ଜି ପ୍ରତିଦିନ ।
ଏଥିକି ସଂଯୋଗ କରିବା ପଥ୍ୟ । ତବତ ଭାତକୁ ଭୁଞ୍ଜିବ ନିତି ।
ବ୍ୟଞ୍ଜନ ଏଥିକି ନୁହଇ ଲେଖା । ଗୋରସ ଭୋଜନ କରିବ ଏକା ।
ଛୁତ ଦ୍ୱାରେ ଯେଉଁ ସଂବାଇ ହୋଇ । ଚୁଚୁନ୍ଦ୍ରା ବ୍ୟାଧିକି ତାହାକୁ କହି ।
ତହିଁର ଓଷଧ ଯେଉଁ ବିଧାନ । ହେତୁ କରି ବୁଝ ଆପଣା ମନ ।
ପାଞ୍ଚ ଚିନା ମହା ଭୈରବ ବଡ଼ି । ମୟୂର ଗିରିଆ, ଚିନା ପାଞ୍ଚ ଭରି
ଲୋଧ ପାଞ୍ଚ ଚିନା ଯତନ କରି । ଡାଳିମ୍ବ ଅଗି ପାଞ୍ଚ ଚିନା କରି
ଶାଳିଗୁଆ ତହିଁ ଗୋଟିଏ ଭର ।
ଆଠ ପଦାର୍ଥ ଏକ କରି ଚୂର୍ଣ୍ଣ । ଶିଳରେ ଚୁରି ଗୁଣ୍ଡି କରି ଯେନ
କନାରେ ଗୁଡ଼ାଅ ଯତନେ ଥୋଇ । ଘା ମୁଖରେ ଦେଉଥିବ ଦେଇ ।
ଏଥକୁ ପଥ୍ୟ ଯେ ଯେବଣ ମତ । ଘିଅ ଘେନି ଭୁଞ୍ଜ ତବତ ଭାତ ।

ମଦରଙ୍ଗା ଶାଗ ବ୍ୟଞ୍ଜନ କରି । ଅଲଣା ଖାଇବ ଲୁଣ ନ ଭରି ।
ଦୀନକୃଷ୍ଣ ଦାସ କହିଲେ ଯାହା । ସୁବୁଦ୍ଧି ସାଧୁ ଜନେ ହେତୁକର ତାହା ।
କାମଳ ବ୍ୟାଧି କରୁଥାଇ ଯେବେ । ତହିଁକି ପରିଗୁଣ ବିହିବା ଏବେ ।
ତୁଣ୍ଡ ମଧୁର ହୋଇ ଅନ୍ନ ନ ରୁଚେ । ଦେହରେ ତାପ ପୁରିଆଇ ନିଛେଥ ।
ବଡ଼ ବିକଳ ଯେ ବଥାଇ ପେଟ । ହସ୍ତ ଗୋଡ଼ ପୁଣ ହୋଇଥାଇ ମୋଟ ।
ଗର୍ଭ ପୋଡୁଥାଇ ପାହାନ୍ତି ବେଳେ । ମଳ, ଭୋକ, ବାଡ଼ି ନୁହଇ ଢାଳେ ।
କର ପାଦଅଣ୍ଟା ଶୁଳାଇ ହୋନ୍ତି । ଦେହ ବୁଲାଇ ଆସୁଥାଇ ବାନ୍ତି ।
ଏମନ୍ତ ଦେଖିବା ଯାହାର ଗାତ୍ର । ପ୍ରଥମେ ଦେହ କରାଇବା ଭେଦ ।
କାମଳ ବ୍ୟାଧି ଏ ଅଟଇ ଯାଣ । ଏଥକୁ ଔଷଧ ବିହିବା ଶୁଣ ।
ପ୍ରଥମେ ଭେଦ କରାଇବା ବାଡ଼ି । ମଧରେ ଦେବା ତିନିଦିନ ଛାଡ଼ି ।
ପୁଣି ଆନଦିନ କରିବା ଭେଦ । ତହିଁ ଉତାରେଣ ଦେବା ଓଷଧ ।
ପଳାଶ ମଞ୍ଜି କରାଇବା ଠୁଳ । ଗୋହିରା-ପିପ୍ପଳି ଏ ତାଳ ମୂଳ ।
କୁଡ଼ କି ସାଲପନି ନିରିବାଣି । ରକ୍ତ ଚିରାଇତା ଦଶମୂଳ ଆଣି ।
ପଳେ ଲେଖାଏଁ ସବୁଠାରେ ଘେନ । ଶୁଖାଇ କରି ଗୁଣ୍ଡା କର ଚୂର୍ଣ୍ଣ ।
ବତିସ ମାଣ ଯେ କରିବ ପାଣି । ହାଣ୍ଡିରେ ଭରି ଆଉଟିବ ପୁଣି ।
ଓଷଧ ଭରି ଆଉଟିବ ବେଗେ । ଗୁଡ଼ ପାଗ କରି ଯେମନ୍ତ ବାଗେ ।
ଦେହେ ଦେହ ଯେବେ ଲାଗିବ ଯଡ଼ି । ଏମନ୍ତ ହୋଇଲେ ଥୋଇବ କାଢ଼ି ।
ସେହି ହାଣ୍ଡିରେ ସେ ରହିଣ ଥିବ । ତ୍ରିକଟୁ ତିନିମାଢ଼ ତହିଁରେ ଦେବ
ପଞ୍ଚ ମାଢ଼ ତୁଳି ଖାଇବ ନିତି । ଏଥକୁ ସଂଯୋଗ କରିବ ପଥ୍ୟ ।
ସାଗ ଆମ୍ବିଳ ବିବର୍ଜିତ କାଞ୍ଜି । ତବତ ଭାତ ଘୃତ ଘେନି ଭୁଞ୍ଜି ।

## ଶୋଥବ୍ୟାଧି ଓଷଧ

ଶୋଥ ବ୍ୟାଧି ଥିବ ଯାହା ଦେହେଣା । ତହିଁକି ଓଷଧ କହିବା ଶୁଣ ।
ଦଶପାଞ୍ଚ ମାଢ଼ କାଲୁରି ମୁତ । ପନ୍ଦର ମାଢ଼ କର ଛେଳି ମୁତ ।

ଢଡ଼ା ମାଲପା ମାଢ଼େ କର ଠୁଳ । ପିପ୍ପଳି ଘେନିମ ପନ୍ଦର ପଳ ।
ଶୁଣ୍ଠି ବାରପଳ ତହିଁରେ ମିଶା । ଦାସ କେରେଣ୍ଡା ପତର ବେନି ବିଶା ।
ଗଇସ ପତ୍ର ଦଶ ପଳ ଦେଇ । ବଗାଗେଣ୍ଡୁ ପାଞ୍ଚପଳ ମିଶାଇ ।(୧)
ସଏନ୍ଧବ ତିନିପଳ ତହିଁରେ ଭରି । ସଏନ୍ଧବ ତିନିପଳ ତହିଁରେ ଭରି ।
ସମସ୍ତ ଦ୍ରବ୍ୟ ଏହି ଭାବେ ଯେନ । ଶୁଖାଇ କରି ଗୁଣ୍ଡା କରି ଚୂର୍ଣ୍ଣ ।
ପ୍ରଥମ ଦିନରେ ଭକ୍ଷିବ ପଳେ । ଦ୍ୱିତୀୟ ଦିନ ଦୁଇତୋଳା ମୂଳେ ।
ଏକୋଇଶ ଦିନ ଖାଇବା ଯାଏ । ସବୁକୁ ଶୋଧନ କରିଥିବ କାୟେ ।
ପଥିକି ତବତ ଭାତ ଯୁଗତ । ତଉଣ କରିବ ବାଇଗଣ ପିତ ।
ଆବର କଳରା ମହୁର ଦେବ । ଆନ ବ୍ୟଞ୍ଜନ କେବେହେଁ ନ ଦେବ ।
ଏମନ୍ତ ପ୍ରକାରେ ପାଳିବ ଯେବେ । ଶୋଥ ବ୍ୟାଧି ଭଲ ହୋଇବ ତେବେ ।
ଦୀନକୃଷ୍ଣ ଦାସ କିରତି ଥାଉ । ହେତୁ କଳାଲୋକ ବୈଦ୍ୟ ହେଉ ।
ଯେବଣ ବଦ୍ୟ ପଢ଼ଇ ସାହାସ୍ର ପାଠ । କେବେହେ ନ ଯାଇ ଅମଡ଼ା ବାଟ ।
ପ୍ରଥମେ ଦେଖିବ ନାଟିକା ଯାର । ଦୁତୀୟେ ଛୁତରେ ତଇଳ ଦେଇ
ତୃତୀଏ ବିହିବ ପାଞ୍ଚନ ଶିସ । ଚତୁର୍ଥେ ମଳୁକୁ ଦେବାକ ରସ ।
ଯେ ଯେତେ ବଇଦ୍ୟ ବୋଲାଇ ବଡ଼ । ବ୍ୟାଧି ଛାମୁରେ କେ'ନୁହଇ ବଡ଼ ।
ଚଉଷଠୀ ରୋଗ ଘେନିଣ କାୟା । ନାନା ବ୍ୟାଧି ଘୋଟି ଅନନ୍ତ ମାୟା ।
ଛାଡ଼ିଲା ବୋଲି ନ କରିବ ପ୍ରତେ । କ୍ଷୁଦ୍ର ରୂପ ଧରି ଥାଇ ଗୁପତେ ।
ଅଗ୍ନି ର ଶେଷ ଯେ ବ୍ୟାଧିର ଶେଷ । ଏ ଦୁଇକଥାକୁ ନାହିଁ ବିଶ୍ୱାସ ।
ଯେତେ ପ୍ରକାରେ ଉପୁଜଇ ନାଡ଼ି । ଅନ୍ତର୍ଗତ ବ୍ୟାଧି ନୁହଇ ବାଡ଼ୀ ।(୨)
ବ୍ୟାଧି ନ ଚିହ୍ନି ହୋଏ ମତିଭ୍ରମ । ବୈଦ୍ୟ ନୁହଇ ସେ ମଳୁକୁ ଯମ ।

---

(୧) ଖ ପୋଥିରେ ଅଧିକ

ହରିତକି ପାଞ୍ଚପଳ ପୁରୋଇ । ଗଇଷ ପତ୍ର ଦଶପଳ ଦେଇ ।

(୧) ଖ ପୋଥିରେ ଅଧିକ ଅଛି -

ରୋଗ ମହାମାୟା କେ ପାରୁ କହି । ମୂତ୍ର ଦେଖିଲେ ହେଁ ପରତେ ନାହିଁ ।
ଦୃଷ୍ଟିରେ ଦେଖିଲେ ଧରି ନ ପାରି । ଅଦୋଷି କେହୁ ଭାବନା କରି ।
ସାହାସ୍ର ନ ପଢ଼ି ଯେ ବୋଲଇ ବୈଦ୍ୟ । ସେ ଲୋକମାନକୁ ବାଇରେ ହେଯ ।
ନାଡ଼ି ଲକ୍ଷଣ ବାୟାର ମତ । ଅନ୍ତର୍ଗତ ବ୍ୟାଧି କହିଲି ତଥ୍ୟ ।

ତିଳ ପ୍ରମାଣେ ଯେହେତୁ ମେଘ ଥାଇ । କ୍ଷଣକେ ବ୍ରହ୍ମାଣ୍ଡ ଘୋଟିଣ ଯାଇ ।
ବ୍ୟାଧିର ମହିମା କେ କରୁ ଶେଷ । କାଠରୁ ଯେସନେ ଅଗ୍ନିପ୍ରକାଶ ।
ଗୁପତେ ଥାଇ ନ ଜାଣନ୍ତି କେହି । କ୍ଷଣକେ ବ୍ରହ୍ମାଣ୍ଡ ପାରଇ ଦହି ।
ସେହିମତି ଯେ ରୋଗର କଥା । ବଦ୍ୟ ଜନେ ଶୁଣି ନ ପାଅ ବ୍ୟଥା ।
ମନେ ଗର୍ବ କରି ନୋହିବ ଟାଣି । ଅନୁଭବ ଥିଲେ ବ୍ୟାଧିକି ଜାଣି ।
ଯେ ଯେତେ ବଦ୍ୟ ହୋଇଲେ ହଉ । ମୁତ୍ର ନ ଦେଖି ସେକି ଓଷଧ ଦେଉ ।
ପାଣିର ବାଡ଼ି ଯେ ପାରିବ ନାଡ଼ି । ତାହାବେଳେ ହୁଏ ଏ ବ୍ୟାଧି ବାଡ଼ି ।
ମଲୁ ନ ଦେଖି ଯେ ଓଷଧ ଦେଉ । ମଲୁର ହତ୍ୟାକୁ କାରେଣୀ ସେହୁ ।
ହସ୍ତରେ ନାଡ଼ି ପ୍ରଚରିବ ଏଣେ । ଲୁତରେ ପୁଣି ତୈଳ ଦେବ ତେଣେ ।
ଦୁଇ କଥାକୁ ଅନୁଭବ ଥିବ । ମଲୁର ଏ ବେନି ପଥ ଦେଖିବ ।
ସାହାସ୍ର ମତ ଏ ଅଟଇ ତିନି । ତେବେ ସେ ବ୍ୟାଧି କି ପାରଇ ଚିହ୍ନି ।
ଭାଷା କୁହାଇ ବଚନ ଶୁଣିବା । କେମନ୍ତ କୁହଇ ତାହା ଜାଣିମା ।
କେଉଁ ଦ୍ରବ୍ୟକୁ ସେ କରଇ ଆସ । ପଚାରିଣ ବୁଝି ବ୍ୟାଧି ଉଦ୍ଦେଶ୍ୟ ।
ପାଞ୍ଚ ପ୍ରକାରେ ବୁଝିବ ଏମତ । ପଞ୍ଚ ଭୁତରୁ ବ୍ୟାଧି ହୁଏ ଯାତ ।
ତୁମ୍ଭେ ବୋଲିବ ନ ଜାଣି ମୁଁ ଅବା । ଏଥକୁ ସଂଶୟେ ଫେଡ଼ି କରିବା ।
ପୃଥି ଆପ ତେଜ ଆକାଶ ବାଇ । ଯେଉଁ ଥାନରୁ ଯେ ଉଦୟ ହୋଇ
ନାଟିକା କଥା ଯେଉଁ କଥା ହେଜ । ପୃଥିରେ ବ୍ୟାଧି ସେ ବିଚାରି ବୁଝ ।
ମୁତ୍ର ଧରିଣ ଯେ ତଇଳ ଦେଇ । ଆବର ମହିମା ଅଟଇ ସେହି ।
ନେତ୍ର ପାତ ଯାହା କହିଲେ ତିଳେ । ତେଜର କଥା ଯେ ବୁଝିବା ପଳେ ।
ବଚନ ମାର୍ଗେ ଯେଉଁ କଥା କହେ । ବାୟୁର ଏ ଗୁଣ ପ୍ରକାଶ ହୋଏ ।
ଯେବଣ ଦ୍ରବ୍ୟକୁ କରଇ ଆଶା । ଆକାଶ ଭୁତର ଏମନ୍ତ ଭାଷା
ପଞ୍ଚ ପ୍ରକାରେ ଯେ ଯାଣଇ ଗୁଣ । ତାହାକୁ ଲେଖିବା ବିଷ୍ଣୁ ସଙ୍ଗେଣ
ବ୍ୟାଧି ଭଲ ମନ୍ଦ ଜାଣଇ ସେହୁ । ବଦ୍ୟ ନାରାୟଣ ଅଟଇ ସେକୁ ।
ଶ୍ରୀ ଜଗନ୍ନାଥଙ୍କ ଛାମୁରେ କହି । ବିଚାରି ମଲୁକୁ ଓଷଧ ଦେଇ ।
ଏଥି ଯେଉଁ ମଲୁ ହୋଇବ ନାଶ । ବଦ୍ୟକୁ ଆଉ ନ ହୋଇ ଦୋଷ ।

ମନେ ନ ଧରିବ ମୋହର ଦୋଷ । ପଣ୍ଡିତ ଜନେ ନ ଧରିବା ରୋଷ ।
ପ୍ରାଣି ବ୍ୟାଧିରୁ ତାରିବା ପାଇଁ । ଧର୍ମ ପନ୍ଥ ଘେନି ଅଛି ମୁଁ ବିହି ।
ସଂସାରେ କେହି ଚିର ନୋହେ କିନା । ପାପ ପୁଣ୍ୟ ଘେନି ବଣିଜ ସିନା ।
ଯାହା ଅରଜିବ ତାହା ଭୁଞ୍ଜିବ ସେହି । କାହାରି ସଙ୍ଗତେ ନ ଯିବ କେହି ।
ଅର୍ଥ ପଦାର୍ଥକୁ ମନେ ନ କର । ପ୍ରାଣୀକି ଏକା ଉପକାର କରେ ।
ନାନା ବ୍ୟାଧି ଘେନି ଏ ଦେହ ଗୋଟା । ଜୀବନ ଯେସନ ପାଣି ଫୋଟକା ।(୧)
ମାନବ ଜନ୍ମ ଯେ ହୋଇଲି ମୁହିଁ । କୃତି ଥାଉ ଏକା ସଂସାରେ ରହି ।
ଅନୁଭବ ଥିବ ଯେବଣ ଲୋକ । ଏ ସାସ୍ତ୍ର ପଢ଼ିଲେ ହୁଏ ବିବେକ ।
ସଂସାରେ ଯେତେ କବିମାନେ ଥିଲେ । ବଦ୍ୟ ସାହାସ୍ତ୍ର କେହି ନ କହିଲେ ।
ପ୍ରାଣୀମାନଙ୍କର ଉପକାର ଯାହା । କେହୁଣି କବି ତ ନ କଲେ ତାହା ।
ଏ ଦେହ ଘେନି ସବୁ ହୋଏ ସାଧିଏ । ଏଥକୁ କଳଙ୍କ ହୋଇଥାଏ ବ୍ୟାଧି (୨)
ସୂର୍ଯେ ଉଦେ ହୋଇଲେ ତିମିରି ସତ । ବ୍ୟାଧିକି ଔଷଧ ସେହିକି ସଂଯାତ ।
ବିଚାରି କରି ମୁଁ ଯୋଡ଼ିଲି ଯାହା । ମୁନିମାନେ ମତେ କହିଲେ ଯାହା ।
ସେ ଘେନି ପରତେ ପାଇଲି ଚିତ । ଔଷଧମାନଙ୍କୁ ଯୋଡ଼ିଲି ଗୀତ ।
ପ୍ରାଣୀମାନଙ୍କ ଉପଗାର ପାଇଁ । ବଦ୍ୟ ସାହାସ୍ତ୍ର ଏକେ ଦେଲି କହି ।
ଶ୍ରୀ ଜଗନ୍ନାଥଙ୍କ ପଦ୍ମ ଚରଣ । ଶିଶୁମତି କୃଷ୍ଣଦାସ ଶରଣ ।

ଆହେ ସୁଧିଜନମାନେ ଶୁଦ୍ଧ ଅଶୁଦ୍ଧ ପୁରୋଇ ଏ ବଦ୍ୟସାସ୍ତ୍ର ପଢ଼ିବ ।

ଲେଖନକାର ଦୋଷ ନ ଧରିବ ।

ଯଥା ଦୃଷ୍ଟି ତଥା ଲେଖନ । ଏ ବଦ୍ୟ ସାହାସ୍ତ୍ର ସଦା ଜୟେ ସମ୍ପୂର୍ଣ୍ଣ ।

---

(୧) ଖ ପୋଥିରେ - ପାଣିର ଫୋଟା

(୧) ଖ ପୋଥିରେ ଅଧିକ -

ବ୍ୟାଧି ପୀଡ଼ା କଲେ ମଣିଷ ମରି । ଔଷଧ ଦେଲେ ଧାତିକାରେ ତାରି
ଦେଇଥିଲେ ସିନା ସାଧିବ ଜ୍ଞାନ । ଯେଥକୁ କେହି ତ ନ କଲେ ମନ ।
ବାର ବରତ ଯେ ଲୋକ ଆଚାର । ଦେହ ଥିଲେ ସିନା ସବୁ ବିଚାର ।
ଯେ ଦେହ ଯେବେ ବ୍ୟାଧି ଯୋଗେ ଯିବ । କାହାକୁ ଘେନି ସେ ସଂସାରେ ଥିବ ।
ଆଇଷ୍ଣ ପୂରିଲେ ସେ ସହଜେ ଯାଇ । ସେ କଥା କାହାରି ଆୟତ ନୋହି ।
ବଟା ଛିଡ଼ିଲେ ବାଡ଼ ଯେହ୍ନେ ଆଣ୍ଡ । ଦେହ କଥା ହିଁ ସେହିମତି ମୋଟ ।
ଦେହ ଥିଲେ ସବୁ ହୁଅଇ ସାଧି । ଯେଥକୁ କଳଙ୍କ ହୋଇଲା ବ୍ୟାଧି ।
ବ୍ୟାଧିକି ଔଷଧ ସେହି ସଂଯାତ । ସମୁଦ୍ରେ ଯେସନ ନାବ ଯୋଗତ ।